# ମହତାବ ଜୟନ୍ତୀ ଅଭିନନ୍ଦନ ଗ୍ରନ୍ଥ

## ୧୯୮୪

ସମ୍ପାଦନା :

ସରୋଜ ରଞ୍ଜନ ମହାନ୍ତି
ଗୋରାଚନ୍ଦ ମିଶ୍ର
ଗୋବିନ୍ଦ ଚନ୍ଦ୍ର ଦାସ
ପ୍ରଫୁଲ୍ଲ କୁମାର ସାହୁ
ଜେନାମଣି ନରେନ୍ଦ୍ର କୁମାର
ମହେଶ୍ୱର ମୂଳିଆ

ପ୍ରକାଶକ :

ମହତାବ ଜୟନ୍ତୀ କମିଟି, କଟକ-୨

ମୂଲ୍ୟ : ଦୁଇ ଟଙ୍କା

# ମହତାବ ଜୟନ୍ତୀ କମିଟି, କଟକ-୨

ସଭାପତି :

ଶ୍ରୀ ବସନ୍ତ କୁମାର ବିଶ୍ୱାଳ
ପୂର୍ବ ଓ ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ

ଉପ-ସଭାପତି :

ଶ୍ରୀ ମହମ୍ମଦ ୟୁସୁଫ
ଶ୍ରୀ ସୁରେଶ ଚନ୍ଦ୍ର ମହାରଣା

ସଂପାଦକ :

ଶ୍ରୀ ସଂଗ୍ରାମ କେଶରୀ ମହାପାତ୍ର
ଶ୍ରୀ କେଶବ ଚନ୍ଦ୍ର ରାଉତ

କୋଷାଧ୍ୟକ୍ଷ :

ଶ୍ରୀ ନଗେନ୍ଦ୍ର ନାଥ ଜେନା

# ଅଜାଙ୍କ ବାହାଘର

## ଡକ୍ଟର ନଟବର ସାମନ୍ତରାୟ

୧୯୮୪ ସାଲ ଅପ୍ରିଲ ତା ୩୦ ରିଖ ସୋମବାର । ଅଜାଙ୍କ ବାହାଘର । ସ୍ଥାନ : ସୂଚନାଭବନ, ଭୁବନେଶ୍ୱର । ସନ୍ଧ୍ୟା ସାଢ଼େ ଛ ।

ପା'ଞ୍ଚ ନ ବାଜୁଣୁ ଯିବାକୁ ପ୍ରସ୍ତୁତ ହେଲି । ଉତ୍ସବ ଆରମ୍ଭ ହେବା ପୂର୍ବରୁ ସେମିତି ପହଞ୍ଚିବାକୁ ପଡ଼ିବ । ଖରା ମଉଳି ନାହିଁ, ବାହାରେ ଗରମ ପବନ । ମୁହଁରେ କଷ୍ଟୁ ଗୁଞ୍ଜି ଦେଇ ସେଇ ଖରାଖରାରେ ବାହାରି ପଡ଼ିଲି । ରବି ଟକିଜ୍ ପାଖ ରାସ୍ତା ଉପରେ ବନ୍ଧୁ ଚୌଧୁରୀ ଦମ୍ପତିଙ୍କ ଘର । ଏମିତି ଖରାଟାରେ ବାହାରି ଥିବା ଦେଖି ଚୌଧୁରୀଏ ମୋ ନାଁ ଧରି ଡାକ ଦେଲେ । ଝାଳ ସର ସର ଦେହରେ ସାଇକେଲ୍‌ଟି ଦୁଆରେ ରଖି ଦେଇ ବସି ପଡ଼ିଲି ସେମାନଙ୍କ ପାଖରେ ।

—ଏ ଅବେଳାରେ, ପୁଣି ଏ ଅବସ୍ଥାରେ । ଚୌଧୁରୀଏ ଆଶ୍ଚର୍ଯ୍ୟ ହୋଇ ମୋତେ ପଚାରିଲେ ।

—ବାହାଘରକୁ ଯାଉଛି । ଛଅଟା ସୁଦ୍ଧା ମୋତେ ପହଞ୍ଚିବାକୁ ହେବ ।

—କାହା ବାହାଘର ମ । ଔତ୍ସୁକ୍ୟରେ ପଚାରିଲେ ମିସେସ୍ ଚୌଧୁରୀ ।

—ଅଜାଙ୍କର ।

—ବାହା ହେବାକୁ ଅଜାଙ୍କର କ'ଣ ବୟସ ଆସୁଛି । ଡାହା ମିଛକଥା ।

—ଆଦୌ ମିଛ ନୁହେଁ । କହନ୍ତୁ ତ ଆପଣ ସଦ୍ଧ ନ ଥାନ୍ତେ, ଚୌଧୁରୀଏ କ'ଣ କରନ୍ତେ ?

—ଅଜାଙ୍କର କ'ଣ ମୁଣ୍ଡ ଖରାପ ? କାହିଁକି ଦୋଦୋ ପାଞ୍ଚ ହୋଇ ବନ୍ଧୁ ଗୃହିଣୀ ଜିଜ୍ଞାସା କରିଦେଲେ ।

କହିଲି, ମୋର ଠିକ୍ ଏଇ ଧାରଣା । ତେବେ ଅଜାଙ୍କର ବାହାଘର ଯେତେବେଳେ, ଘରେ ରହିପାରନ୍ତି କପରି !

ଅଜାଙ୍କ ପାଇଁ କିଛି ଖଜା ନେଇ ଯାଉ ନାହାନ୍ତି ? ଖୁବ୍ ମଜା ହେବ । ବନ୍ଧୁ ପତ୍ନୀ କିଛି ବଦ୍ରୂପ କଳ୍ପରେ କହିଲେ ।

—ଆପଣ ଅଜାଙ୍କ ପ୍ରତି ଖୁବ୍ ଅନ୍ୟାୟ କରୁଛନ୍ତି । ଗଲା ପଚିଶ ବର୍ଷ ଧରି ହଜାର ହଜାର ସଂଖ୍ୟାରେ ବାହାରିଛନ୍ତି ତାଙ୍କର ପୁଅଝିଅ, ନାତିନାତୁଣୀ, ଅଣ-ପଣ ନାତିନାତୁଣୀ । ଏଇମାନଙ୍କୁ ସେ ହାତକୁ ଢ଼'ହାତ କରି ନିଜ ନିଜ ଗୋଡ଼ରେ ଠିଆ ହେବାର ସାହସ ଦେଇଛନ୍ତି । ସେ ଆମକୁ କଲେ ଢ଼'ହାତ । ସେ ଢ଼'ହାତ ହେଲା ବେଳେ ଆମେ ଦେଖିବୁ ନାହିଁ କପରି ? ହଉ, ବେଳ ହୋଇଗଲା । ନମସ୍କେ ।

ତରତରରେ ସାଇକେଲ ଛୁଟାଇଲି ସୂଚନା ଭବନ ଆଡ଼େ । ଲମ୍ବ ଲମ୍ବ ନିଶ ରଖିଥିବା ଜଣେ ଜବାନ । ବାହାରେ ମୁଁ ଏକା ଏପଟ ସେପଟ ହେଉଥିଲାବେଳେ ମୋତେ ପଚାରିଲେ, ଆଜ୍ଞା ଆଜିର ପ୍ରୋଗ୍ରାମ ।

—ଅଜାଙ୍କର ବାହାଘର ।

—ବାହାଘର ତ । ସାହେବ ଆମକୁ କାହିଁକି ଏଠିକି ପଠାଇଛନ୍ତି ?

—ପୁଲିସ ଭାଇ, ହୁକୁମ ମାନିବା ଯାହାଙ୍କ କାମ, ସରକାରଙ୍କ ଠିକ୍ ଭୁଲରେ ମୁଣ୍ଡ ଖେଳାଇବା କି ଦରକାର ?

—ବାହାଘର ବେଳେ କ'ଣ ଦଙ୍ଗା ହେବ ଯେ ଆମେ ଠେଙ୍ଗା-ବାଡ଼ି ଧରି ଠିଆହୋଇଥିବୁ । ସାମାନ୍ୟ ବିରକ୍ତିରେ ପୁଲିସ ଭାଇ କହିଲେ ।

—ପୁଲିସ ସାହେବ ଠିକ୍ କରିଛନ୍ତି । ଦଙ୍ଗାର ଆଶଙ୍କା ବହୁତ ।

—ବିଲକୁଲ ଫାଲତୁ । ଆଜି ଗାଁକୁ ଯିବାକୁ ଦରଖାସ୍ତ କରିଥିଲି ଯେ ଗାଁକୁ ଯିବା ହେଲା ନାହିଁ କି ଏଠି କିଛି କାମ ହାତକୁ ଆସିଲା ନାହିଁ । ବେକାର ଠିଆ ହୋଇ ହୋଇ ପ୍ରାଣ ଗଲା ।

—ଗୋଟାଏ ପ୍ରାଣ ଯିବା ପୂର୍ବରୁ ଆଉ ଦଶଟା ମୁଣ୍ଡ ଯେମିତି ମାଟିରେ ନ ପଡ଼େ- ପୁଲିସ ଭାଇ, ତା'ପାଇଁ ଟିକିଏ ନଜର ଦେଇଥାଅ ।

—ଦଶଟା ମୁଣ୍ଡ କାହାର ?

—ଶିଶୁପାଳମାନଙ୍କର ।

—ଏ ଶିଶୁପାଳ ପୁଣି କଏ ?

—ଯେଉଁମାନେ କନ୍ୟା ପାଇବେ ନାହିଁ । ଦଙ୍ଗା ଭିଆଇବା ବାଲା ଆଉ କଏ ?

—କଥାଟା କିଛି ସିଧା କହୁ ନାହାନ୍ତି କାହିଁକି ?

—ସିଧା କଥାଟା ହେଉଛି କନ୍ୟାକର୍ତ୍ତା ଚାହାନ୍ତି ସୁନା । କନ୍ୟା ସୁନା କଥା କ'ଣ ତମ କାନରେ କେବେ ପଡ଼ି ନାହିଁ । ଯେ ଯେତେ ସୁନା ଦେଇ ପାରିଲା କନ୍ୟାଟି ହେଲା ତା'ର ।

—ଅଜା କ'ଣ ଏତେ ସୁନା ଦେଇ ପାରିଲେ ?

—ନ ଦେଇଥିଲେ ଏତେ ଲୋଭନୀୟ କନ୍ୟାରତ୍ନ ବୁଢ଼ାବୟସରେ ପାଇଥାନ୍ତେ କିପରି ତମେ ଭାବୁଛ ?

—ମୁଁ ଭାବୁଛି ଏଥିରେ ଆଉ କିଛି ରହସ୍ୟ ଅଛି । ତେବେ ଏ ଶିଶୁପାଳମାନେ ଯିବେ କୁଆଡ଼େ ?

—ଯିବେ ସିଧା ସଳଖେ ସଳଖେ ଶିଶୁପାଳ ଗଡ଼କୁ ।

—ସେଠି କ'ଣ କରିବେ ?

—ଅଜା କନ୍ୟା ହାତକୁ ନେଲାପରେ ଏମାନଙ୍କୁ ସମାଧି ଦିଆଯିବ । ଦଶବର୍ଷ ପରେ ଏମାନଙ୍କୁ ଉଠାଯିବ ।

—ସେତେବେଳେ ଆଉ କ'ଣ ଥିବ ?

—ସେମାନଙ୍କ ହାଡ଼ ଓ ଖପୁରି ।

—ତା'ପରେ ।

—ସେତେବେଳର ଡକ୍ଟର ମନ୍ମଥ ନାଥ ଆଉ ଡକ୍ଟର ନବୀନକୁମାରମାନଙ୍କୁ ନିମନ୍ତ୍ରଣ କରାଯିବ ।

—ଏ ଡାକ୍ତରମାନେ କ'ଣ କରିବେ ?

—ପୋଷ୍ଟମର୍ଟମ୍ ବୁଝେଁ ପୁଲିସଭାଇ, ଏମାନେ ଶିଶୁପାଳମାନଙ୍କର ଖପୁରିକୁ ଗୋଟାଏ ଯନ୍ତ୍ରରେ ଗୋଟି ଗୋଟି କରି ଓଜନ କରିବେ ।

ଠିକ୍ ଏତିକବେଳେ ସୂଚନା ଭବନର ଗେଟ୍ ପାଖରେ ବର ଆସି ପହଞ୍ଚିଗଲେ । ମୁଁ କହିଲି, ପୁଲିସ୍‌ଭାଇ, ତମ ଡିଉଟିରେ ତମେ ରହ । ମୁଁ ଯାଉଛି ବାହାଘର ଦେଖି ।

ଛୁଟିଲି ହଲ୍ ଭିତରକୁ । ବାଟରେ ମିଳିଗଲେ ଦୁଇଜଣ ବଢ଼ିଆ ସାଥୀ । ଗ୍ୟାଲେରୀର ଶେଷ ଧାଡ଼ିରେ ଆସନ ମିଳିଗଲା । ମୋ' ବାଁପଟେ ରମେଶବାବୁ, ଡାହାଣପଟେ ପ୍ରଭାକରବାବୁ । ଦେଖିଲି, ଆମ ତିନିଜଣଙ୍କ ପରି ଅନ୍ୟାନ୍ୟ ଅଜସ୍ର ନାଗରିକାଗଣଙ୍କ ଦ୍ୱାରା ଗ୍ୟାଲେରୀଟି ପୂର୍ଣ୍ଣ । ବେଦୀ ମଣ୍ଡପଟିରେ ଅଛନ୍ତି ପାଞ୍ଚଜଣ—ବର, ବରକର୍ତ୍ତା, କନ୍ୟାକର୍ତ୍ତା, ପୁରୋହିତ ଓ ଜଉତିଷ ।

ପୁରୋହିତ-ଜଉତିଷଙ୍କ ଦୀର୍ଘ ଉଚ୍ଚାରିତ ମନ୍ତ୍ର ଓ ମଙ୍ଗଳାଷ୍ଟକ ଧ୍ୱନିରେ ହଲ୍‌ଟି ପ୍ରକମ୍ପିତ ହୋଇ ଉଠୁଥାଏ । ଏହା ଭିତରେ ଆସିଲା କିଛି ପାନୀୟ । ଆମର ପାନ-ପାନୀୟ-ସେବା ଓ ଖୁସି କଥାବାର୍ତ୍ତା ଭିତରେ ବାହା-କାମ କେତେବେଳେ ସରିଗଲା ଜାଣି ହେଲାନାହିଁ ।

ବାହାରକୁ ଆସି ଯିବାକୁ ବସିଛୁ ଦେଖିଲି ଅଜା ଧୀରେ ଧୀରେ ଆମ ଆଡ଼କୁ ଆସୁଛନ୍ତି । ନିକଟକୁ ଯାଇ ମୋର ପ୍ରଣାମ ଜଣାଇଲି ! ଉତ୍ସବଟି ସୁଶୃଙ୍ଖଳ ଭାବେ ସମ୍ପାଦିତ ହୋଇଥିବା ଓ କନ୍ୟାରତ୍ନଟି ବୃଦ୍ଧ ବୟସରେ ହସ୍ତଗତ ହୋଇଥିବାରେ ମୋର ଯେଉଁ ବ୍ୟକ୍ତିଗତ ସନ୍ତୋଷ ଓ ଆନନ୍ଦ ଜାତ ହୋଇଥିଲା ତାହା ମଧ୍ୟ ତାଙ୍କୁ ଜଣାଇଲି ।

ସମସ୍ତ ପ୍ରାୟ ରାତି ନଅ । ଛୁଟିଲି ଘରକୁ । ରବି ଟକିଜ ରାସ୍ତାରେ ମୋତେ ଅଟକି ବସିଛନ୍ତି ଶ୍ରୀ ଧୁରୀ ଦମ୍ପତି । ପଚାରିଲେ ବାହା ଓ ଭୋଜି-ଭାତ କଥା । କହିଲି, ଆମେ ତ 'ମିଷ୍ଟାନ୍ନ ମିତରଜନାଃ' । ବଢ଼ିଆ ପାନପତ୍ର ମିଳିଲା । ତାକୁ ସେବା କରୁ କରୁ ତ ବିବାହ କାମ ଗଲେ ।

—ବଡ଼ କାମ କପରି ହେଲା । ଉତ୍ସୁକ ଚିତ୍ତରେ ଉଭୟେ ପ୍ରଶ୍ନ କଲେ ।

—ଛାଡ଼ନ୍ତୁ ସେସବୁ କଥା । ସେଠି କ'ଣ ହେଉଥିଲା କିଛି ବୁଝିହେଲା ନାହିଁ ।

—କାହିଁକି ?

—ଆରେ ବାବୁ, ଓଡ଼ିଆ ଘରର ବାହା । ବେଦମନ୍ତ୍ର କାହିଁ ? ଖାଲି ଇଂରେଜୀରେ ମନ୍ତ୍ରପାଠ ।

—ଏ କ କସମର ବାହା ମ' କହ୍ବ ଚୌଧୁରୀ ପତ୍ନୀ ମନର ଅସନ୍ତୋଷଟି କେବଳ ପ୍ରକାଶ କଲେ ।

—ଯାହାହେଉ କାମଟି ତ ବଡ଼ ଗଳ୍ପ । ସେଇ ହେଉଛି ଆମ-ମାନଙ୍କର ଶ୍ରେଷ୍ଠ ଆନନ୍ଦ । ମୋତେ ବଦାୟ ଦଅନ୍ତୁ ।

—ଯିବାକୁ ଏତେ ତରବର କାହିଁ ? ଆଉ କେଉଁଠିକୁ ଯିବାକୁ କ'ଣ 'ଡାର' ଆସିଛି କ ?

—'ଡାର' ଆସିନାହିଁ ଯେ, 'ଡାର' କରବ ।

—କେଉଁଠିକୁ ?

—ସ୍ୱର୍ଗକୁ ।

—କାହା ପାଖକୁ ?

—ପରମାନନ୍ଦବାବୁ ଓ କେଦାରବାବୁଙ୍କ ପାଖରେ ମୋର ଜରୁରୀ କାମ ଅଛି ।

—ଦରକାର କ'ଣ ?

—ଗୋଟାଏ ଯନ୍ତ୍ର । ସେଇ ଯନ୍ତ୍ରରେ ଆଜର ଶିଶୁପାଳମାନଙ୍କ ଖପୁର ଓଜନ ହେବ ।

—କେମିତ ? କୌତୂହଳରେ ସେମାନେ ପଚ୍ଛର ମୋ' ଉତ୍ତରକୁ ଅପେକ୍ଷା କଲେ ।

—ସେ ଯନ୍ତ୍ରରେ ଗୋଟିଏ ଖପୁର ରଖିଦେଇ ସ୍ୱିଚ ମାରଦେଲେ ଯନ୍ତ୍ରର ଗୋଟିଏ ଅଂଶରେ କ୍ଷୀଣ ଆଲୋକ ରେଖା ଦେଖାଯିବ । ତା'ର ଦୁଇଧାରରେ ଅଛି ଓଜନ-ସୂଚକ କେତେକ ସଂଖ୍ୟା । ଗୋଟିଏ ଧାଡ଼ ଖାଣ୍ଟି ସୁନା-ପରମାପକ, ଅନ୍ୟଟିର ନାମ ଖାଦମିଶା ସୁନା-ପରମାପକ । ପ୍ରତ୍ୟେକ ଖପୁରରେ ଖାଣ୍ଟି ସୁନା ଓ ଖାଦର ଓଜନ କେତେ କେତେ ତାହା ଏଇଥିରୁ ସହଜରେ ଜାଣିହେବ ।

—ଏ ତ ଏକ ଅଦ୍ଭୁତ ଯନ୍ତ୍ର ।

—ଆହୁର ଏକ ଅଦ୍ଭୁତ କଥା ଶୁଣନ୍ତୁ । ଯନ୍ତ୍ରର ପୂର୍ବ ସୁଇଚଟି ବନ୍ଦ କରଦେଇ ଆଉ ଗୋଟିଏ ସୁଇଚ ମାରଦେଲେ ଦେଖାଯିବ ଏକ ଦୀର୍ଘ ଲେଖା—ଏଇ ଖପୁରମାନଙ୍କ ଜୀବନର ଏକ ଏକ ଅଜ୍ଞାତ ଅଧ୍ୟାୟ । କନ୍ୟାରତ୍ନ ଲାଭ ପାଇଁ ନବୋଧ ଶିଶୁପାଳମାନେ ଯେଉଁ ବରଣ ରୂପରେ ନଜର ଖାଣ୍ଟି ସୁନା ଅଛି ବୋଲି ଘର ଘର ବୁଲି ସୁପାରଶମାନ ସଂଗ୍ରହ

କରିଥାନ୍ତି, ଗୋଟିଏ ଗୋଟିଏ ଦଳ ଗଢ଼ି ସେମାନଙ୍କ ଅନୁଗତ ଗୃମଗୃ-ମାନଙ୍କ ମାଧ୍ୟମରେ ବହୁବିଧ ଅନ୍ୟାୟର ଆଶ୍ରୟ ନେବାକୁ କେବେ କୁଣ୍ଠିତ ହୁଅନ୍ତି ନାହିଁ, ସେସବୁ ଅତି ନିର୍ଭୁଲ ଭାବେ ଏଇ ଲେଖା ଭିତରେ ଦେଖା ଯାଇଥାଏ ।

ଆରେ ବାବା, ଏ ଯନ୍ତ୍ର ତ ଅଦ୍ଭୁତ, ତା'ର କାମ ମଧ୍ୟ ତତୋଽଧିକ ବିସ୍ମୟକର । ଆଜିର ଦୁର୍ନୀତି-ନିବାରଣ-ବିଭାଗର ପୁଲିସ୍ ସାହେବ ଏଥିରୁ ଗୋଟିଏ ରଖିଲେ ଭଲ ହୁଅନ୍ତା, ନାହିଁ ? ବନ୍ଧୁ ଶ୍ରୀ ଧୂର୍ତ୍ତଙ୍କ ମୁହଁରୁ ଏତିକି ବାହାରି ପଡ଼ିଲା ।

—ବଡ଼ ଖବରରେ ଯାଇଥିଲେ । ଆପଣଙ୍କ ମୁଣ୍ଡ ବିଗିଡ଼ିଯିବା ଉପରେ, ଟିକିଏ ଥଣ୍ଡା ପାଣି ଚଳନ୍ତୁ । ବନ୍ଧୁ-ପତ୍ନୀଙ୍କ ଏ ଆଶ୍ୱାସନାରେ ମୁଁ କହିଲି, ନାହିଁ ନାହିଁ, ବହୁତ ବେଳ ହୋଇଗଲାଣି । ଘରେ ପିଲାଏ ଚାହିଁ ବସିଥିବେ ।

ରାତି ପ୍ରାୟ ଦଶ ବାଜେ ନ ବାଜେ । ଗେଟ୍ ଖୋଲି ଧାନଝିଅକୁ ଡାକ ଛାଡ଼ିଲି କିଛି ଖାଇବା ପାଇଁ । ଝିଅ ଆସି କହିଲା, ବାପା ! ଅଜାଙ୍କ ବାହାଘରକୁ ଯାଇଥିଲି । ନଅଟା ପର୍ଯ୍ୟନ୍ତ ଆମେ ଅପେକ୍ଷା କଲୁଁ । ତମେ ନ ଆସିବାରୁ ସେଠି ଭୋଜିଭାତ ଖାଇସାରି ଆସିବ ବୋଲି ଭାବିଲୁ । ସବୁ କାମସାରି ବୋଷାଇ ଘର ଚାବି ଦେଇ ତମକୁ ଆମେ ଚାହିଁ ବସିଛୁ ।

ପାଟିରୁ ହଠାତ୍ ବାହାରି ଆସିଲା—

ଜଗନ୍ନାଥଙ୍କର ବଡ଼େଇ<br>
କାହାକୁ ଦିଅନ୍ତି ପାଟ ପୀତାମ୍ବର<br>
କାହାକୁ ଦିଅନ୍ତି ଗଡ଼େଇ ।



# ପ୍ରାବନ୍ଧିକ ଡକ୍ଟର ମହତାବଙ୍କ ଶୈଳୀ

**ଡକ୍ଟର ବାଉରୀବନ୍ଧୁ କର**

ପ୍ରତ୍ୟେକ ଲେଖକ କୌଣସି ଶୈଳୀ ଉପରେ ଆପଣାକୁ ପ୍ରତିଷ୍ଠା କରେ । ଯାହାର ଲେଖାରେ ଏଇ ଶୈଳୀଟି ନାହିଁ, ସେ ବୋଧହୁଏ ଲେଖକ ନୁହେଁ, ଲେଖକ ପାଇଁ ଏଇ ଶୈଳୀଟି ହେଉଛି ତାହାର ରଚନା ରୂପ । ଲେଖାର ବିଷୟବସ୍ତୁ ଅପେକ୍ଷା ବିଷୟବସ୍ତୁର ଉପସ୍ଥାପନା ହେଉଛି ବଡ଼ କଥା । ସୁଗଭୀର ଚିନ୍ତନ, ଅକୃତ୍ରିମ ପରିବେଷଣ, ବୁଦ୍ଧିଦୀପ୍ତ ବିଶ୍ଳେଷଣରେ ଲେଖକର ମର୍ଯ୍ୟାଦା ପ୍ରକଟିତ ହୁଏ । ଡକ୍ଟର ମହତାବଙ୍କ ଲେଖାରେ ଶୈଳୀ ଏଇପରି ଲେଖକୀୟ ମର୍ଯ୍ୟାଦା ତାଙ୍କର ସୃଷ୍ଟିକୁ ହୃଦୟଗ୍ରାହୀ କରିପାରିଛି ।

ଡକ୍ଟର ମହତାବଙ୍କର ଏକାଧିକ ବିଷୟରେ ସମପରିମାଣରେ ଆଗ୍ରହ ପରିଲକ୍ଷିତ ହୁଏ । ତାଙ୍କର ରାଜନୀତି ପ୍ରତି ଯେତିକି ଆଗ୍ରହ ସାହିତ୍ୟ, ସାମ୍ବାଦିକତା, ଇତିହାସ ପ୍ରତି ମଧ୍ୟ ଅନୁରୂପ ଶ୍ରଦ୍ଧା ରହିଛି । ଡକ୍ଟର ମହତାବଙ୍କ ସ୍ୱୀକାରୋକ୍ତି ଏଇପରି, "ରାଜନୀତି କ୍ଷେତ୍ରରେ ମୋର ଯେତିକି ଆଗ୍ରହ, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେତିକି । ଏପରି ମୋର ଅଭ୍ୟାସ ହୋଇ ଯାଇଛି ଯେ ଏଇ ଦୁଇଟି ମଧ୍ୟରେ ପ୍ରଭେଦ ମୁଁ ବେଶୀ କିଛି ଜାଣି ପାରେ ନାହିଁ ।" ( ସାଧନାର ପଥେ-ପୃ: ୩୦୦ ) ମନେହୁଏ ଡକ୍ଟର ମହତାବଙ୍କ ସମସ୍ତ କୃତିତ୍ୱ ଅପେକ୍ଷା ତାଙ୍କର ସାହିତ୍ୟିକ ଜୀବନ ତାଙ୍କୁ ଅଧିକ ଯଶ ପ୍ରଦାନ କରିଛି । ରାଜନୀତିକ ଜୀବନର ଓ ଶାସନଗତ ଅତି ଜଟିଳ ପରିସ୍ଥିତିର ସମ୍ମୁଖୀନ ହେବାରେ ସାହିତ୍ୟ ମଧ୍ୟ ତାଙ୍କୁ ସହାୟକ ହୋଇଛି । ରାଜନୀତି କ୍ଷେତ୍ରରୁ ବାହୁଙ୍ଗା ବାଛିବା ପାଇଁ ପରୋକ୍ଷରେ ତାଙ୍କର ଲେଖା ଜନସାଧାରଣଙ୍କୁ ଯଥେଷ୍ଟ ଇଙ୍ଗିତ ଦେଇଛି । ଯୁଗ ଯୁଗର ଅନ୍ଧ ବିଶ୍ୱାସ ଓ ଭ୍ରଷ୍ଟାଚାରକୁ ଭେଦ କରି

ଜୀବନର ସମ୍ମୁଖୀନ ହେବାକୁ ସେ ତାଙ୍କର ରଚନାମାନଙ୍କରେ ଆହ୍ୱାନ ଦେଇଛନ୍ତି ।

ଡକ୍ଟର ମହତାବ ଗଳ୍ପ, କବିତା ନାଟକ, ଉପନ୍ୟାସ ଓ ପ୍ରବନ୍ଧ-ସବୁ ପର୍ଯ୍ୟାୟରେ ଲେଖଣୀ ଚାଳନା କରିଛନ୍ତି । ମାତ୍ର ତାଙ୍କର ଅନ୍ୟ ସମସ୍ତ ରଚନା ଅପେକ୍ଷା ପ୍ରବନ୍ଧଗୁଡ଼ିକ ଅଧିକ ଆକର୍ଷଣୀୟ । ତାଙ୍କର 'ଗାଁ ମଜଲିସ' ଶିରୋନାମାରେ ପ୍ରକାଶିତ ରମ୍ୟରଚନା ଗୁଡ଼ିକ, ଝଙ୍କାର ପତ୍ରିକାର ସମ୍ପାଦକୀୟ ଗୁଡ଼ିକ ଯେ ଭଳି ଆକର୍ଷଣୀୟ, ବୋଧହୁଏ ଆଉ କିଛି ସେପରି ବହୁ ଜନାଦୃତ ନୁହେଁ । ଚିନ୍ତାର ଗମ୍ଭୀରତା ଓ ଅନୁଭୂତିର ସ୍ପର୍ଶ ତାଙ୍କର 'ଗାଁ ମଜଲିସ' ଶିରୋନାମାରେ ପ୍ରକାଶିତ ରଚନାଗୁଡ଼ିକରେ ଓ ଝଙ୍କାରର ପ୍ରବନ୍ଧ ଶୈଳୀରେ ଲିଖିତ ସମ୍ପାଦକୀୟମାନଙ୍କରେ ସ୍ପଷ୍ଟ ॥

ଡକ୍ଟର ମହତାବଙ୍କ ପ୍ରବନ୍ଧ ଶୈଳୀ ସମ୍ପର୍କରେ ଜାଣିବା ପାଇଁ 'ଗାଁ ମଜଲିସ'ର ବିଶ୍ଳେଷଣ ଆବଶ୍ୟକ । ସାଧାରଣ ଜୀବନର ସମସ୍ୟାକୁ ନେଇ ସାର୍ବଜନୀନ ଦୃଷ୍ଟିରୁ ବିଶ୍ଳେଷଣ କରିବାରେ 'ଗାଁ ମଜଲିସ'ର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । 'ଗାଁ ମଜଲିସ'ରେ ଡକ୍ଟର ମହତାବ ସର୍ବଦା ପାଠକ ସଚେତନ । ପାଠକ ମନରେ ଉତ୍କଣ୍ଠା ସୃଷ୍ଟି କରି ସାଧାରଣ ବିଷୟମାନଙ୍କୁ ଉପସ୍ଥାପନା କରିବାର କୌଶଳ ସେ ଜାଣନ୍ତି । କୌଣସି ବିଷୟକୁ ନୂଆ କରି ଅର୍ଥପ୍ରକାଶ କରିବାରେ ତାଙ୍କର ସମକକ୍ଷ ଲେଖକଟିଏ ବିରଳ । ସେ 'ଗାଁ ମଜଲିସ'ରେ ସମସ୍ୟାର ଅନୁଶୀଳନ ସହିତ ସମାଧାନର ସୂତ୍ର ମଧ୍ୟ ଦେଇଥାନ୍ତି । ପାଠକର ଅନ୍ତରକୁ ଛୁଇଁବା ପାଇଁ ଏଥିରେ ମଧ୍ୟ ଢଗ-ଢମାଳି, ସଂସ୍କୃତ ସୂକ୍ତି ପ୍ରଭୃତିର ଅଭାବ ନ ଥାଏ । 'ବିନାଶ କାଳେ ବିପରୀତ ବୁଦ୍ଧି', ନ ଗଙ୍ଗଦତ୍ତଃ ପୁନରପି କୂପଂ', 'ରାଜା କାଳସ୍ୟ କାରଣମ୍', 'ଶୁଣ୍ଢୀର ସାକ୍ଷୀ ମାତାଲ', ସ୍ତ୍ରୈରେ ଗତେ ବା କମୁ ସାବଧାନମ୍, 'ଶ୍ରୋତା ବକତା କେହି ନାହିଁ, ରୋଦନ କରୁ କାହା ପାଇଁ', 'ବହିଗଲା ନଈ ଫେରଇ ନାହିଁ'—ଏହିପରି ବହୁ ପ୍ରବାଦ ଓ ପ୍ରବଚନ ତାଙ୍କର 'ଗାଁ ମଜଲିସ'ରେ ପରିଲକ୍ଷିତ । ଡକ୍ଟର ମହତାବଙ୍କ 'ଗାଁ ମଜଲିସ' ଲେଖାଗୁଡ଼ିକ ଗଣହୃଦୟକୁ ପ୍ରତ୍ୟକ୍ଷ ରୂପେ ଛୁଏଁ । ଏ ଦୃଷ୍ଟିରୁ 'ଗାଁ ମଜଲିସ'କୁ 'ଗଣ-ପ୍ରବନ୍ଧ' କହିବାରେ କୌଣସି ଅସଙ୍ଗତ ନାହିଁ ।

ଡକ୍ଟର ମହତାବ ସାଧାରଣ ସମସ୍ୟାମାନଙ୍କୁ ନେଇ ଯେପରି 'ଗାଁ ମଜଲିସ୍' ଶିରୋନାମାରେ ରମ୍ୟରଚନା ଲେଖିଛନ୍ତି, ସେଇଭଳି ଝଙ୍କାର ପତ୍ରିକାରେ ବୁଦ୍ଧିଜୀବୀ ପାଠକଙ୍କ ପାଇଁ ଜ୍ଞାନ-ବିଜ୍ଞାନର ବହୁ ପ୍ରସଙ୍ଗ ଆଲୋଚନା କରିଛନ୍ତି । ଏ ସବୁ ଆଲୋଚନାରେ ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟର ସ୍ୱର ଅନୁରଣିତ ହୋଇଛି । ଯେପରି; "ସୃଷ୍ଟିର ବିଡ଼ମ୍ବନା ଏହି ଯେ ମନୁଷ୍ୟର ମନୁଷ୍ୟତ୍ୱ ସବୁ ଯୁଗରେ ମନୁଷ୍ୟ ଦ୍ୱାରା ହିଁ ଆକ୍ରାନ୍ତ । ମନୁଷ୍ୟର ଆକ୍ରମଣରୁ ମନୁଷ୍ୟତ୍ୱକୁ ରକ୍ଷା କରିବା ସାହିତ୍ୟର ଧର୍ମ ବୋଲି ମୋର ମନେହୁଏ ।" (ଝଙ୍କାର-'ଲେଖକର ଅନ୍ତର୍ନିରୀକ୍ଷା- ୨୮ଶ ବର୍ଷ/୧୦ମ ସଂଖ୍ୟା-ପୃ: ୮୮୪) ଏ ବକ୍ତବ୍ୟରେ ଡକ୍ଟର ମହତାବ ଗମ୍ଭୀର ଭାବରେ ଜୀବନ ପ୍ରତି ଏକ ଆହ୍ୱାନ ଦେଇଛନ୍ତି ।

ଡକ୍ଟର ମହତାବଙ୍କ ପ୍ରବନ୍ଧରେ ବୁଝାଇ କହିବାର ବା ବକ୍ତୃତା ଦେବାର ରୀତି ରହିଛି । ସେ ଏଇ ରୀତିଟି ରାଜନୀତି କ୍ଷେତ୍ରରୁ ଲାଭ କରିଛନ୍ତି । କାରଣ ରାଜନୀତିରେ ବକ୍ତୃତା ଦେଇ ଜନମନ ହରଣ କରିବା ହେଉଛି ଏକ ବଡ଼ କଳା । ଡକ୍ଟର ମହତାବ କ୍ଲିଷ୍ଟ ବିଷୟମାନଙ୍କୁ ନେଇ ପ୍ରବନ୍ଧ ଲେଖିବାବେଳେ ସାଧାରଣତଃ ବକ୍ତୃତା ରୀତି ଅବଲମ୍ବନ କରନ୍ତି । ତାଙ୍କର 'ଭାରତୀୟ ସଂସ୍କୃତି', 'ଭାଗବତ ଓ ଜନତା', 'ବର୍ଣ୍ଣାଶ୍ରମ ଓ ଭାରତ', 'ଗୀତାର ସାମାଜିକ ଦର୍ଶନ' ପ୍ରଭୃତି ପ୍ରବନ୍ଧରେ ଏଇ ରୀତି ଅନୁସୃତ । ସେ ବକ୍ତୃତା ଦେବା ଛଳରେ ଅଧୁନାତନ ଯୁଗରେ କର୍ମ-ଯୋଗ ସମ୍ପର୍କରେ ଅନୁଶୀଳନ କରି କହନ୍ତି;"ଆଧୁନିକ ଯୁଗରେ ଅନାସକ୍ତ କର୍ମଯୋଗର ନୀତି ବିସ୍ତାର କରିବାକୁ ହେବ । କାରଣ ଅନାସକ୍ତ ବିନା କର୍ମ ଯେଉଁ ଶତ୍ରୁ ବିକ୍ଷେପ ସୃଷ୍ଟି କରୁଛି, ତାହା ଦୂର କରିବା ଏକାନ୍ତ ବାଞ୍ଛନୀୟ । ନିଜର ସ୍ଥିତି, ନିଜର ନିଜ ପ୍ରତି ଓ ପରିବାର ପ୍ରତି ଦାୟିତ୍ୱକୁ ନିଜ ମନରେ ପୁଙ୍ଖାନୁପୁଙ୍ଖ ରୂପେ ପରୀକ୍ଷା ନିରୀକ୍ଷା କରି ଯେଉଁ ଜୀବିକାକୁ ଯେ ଆଶ୍ରୟ କରିବାକୁ ସ୍ଥିର କରୁଅଛନ୍ତି, ସେହି ହେଉଛି ତାଙ୍କର ଧର୍ମ ଏବଂ ତାକୁ ହିଁ ଅନାସକ୍ତ ଭାବରେ କରିଯିବା ହେଉଛି ଆଜିର କର୍ମଯୋଗ । କୌଣସି ଗୋଟିଏ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିସାରିବା ପରେ ଆଉ ମନକୁ ଉଚ୍ଚାଟ କରିବାକୁ ନ ଦେବା ହେଉଛି ଅନାସକ୍ତି ।" (ଝଙ୍କାର—୨୫/୧୨-ପୃ: ୯୧୮)

ଉତ୍କଳର ମହତାବଙ୍କ ପ୍ରବନ୍ଧରେ ବ୍ୟଙ୍ଗ, ବିଦ୍ରୂପ ଓ ପରିହାସ ବୋଧ ମଧ୍ୟ ଦେଖିବାକୁ ମିଳେ । ଏ ସବୁ ପରିହାସ ବୋଧରେ ଅନ୍ୟ ପ୍ରତି ଅଶ୍ରଦ୍ଧା ନାହିଁ, କେବଳ ଆମର ସାମାଜିକ ଚଳଣିକୁ ସୁଶୃଙ୍ଖଳିତ କରିବାପାଇଁ ରହିଛି ଚେଷ୍ଟାବମ୍ମ । ଆମର ଶାସନ ସମ୍ପର୍କରେ ମହତାବଙ୍କ ବିଦ୍ରୂପ ଏଇଭଳି, "ମାଛ, ବେଙ୍ଗ ଏବଂ ପଶୁ ଏତେ ପରିମାଣରେ କଲିକତାକୁ ରପ୍ତାନି ହେଉଛି ଯେ ନଦୀ ତଟରେ ବସି ଲୋକେ ତୃଷାରେ ପାଣି ମଧ୍ୟ ପାଉ ନାହାନ୍ତି । ସାଧାରଣଙ୍କୁ ସୁଷମ ଖାଦ୍ୟ ଯୋଗାଇବା ଯେପରି ଶାସନର ଦାୟିତ୍ୱ ନୁହେଁ ଏପରି ମନେ କରାଯାଉଛି ।" (ଝଙ୍କାର—୨୮/୧୦-ପୃ: ୮୦୮) ଉତ୍କଳର ମହତାବ ପ୍ରତୀକାତ୍ମକ ଭାବରେ ମଧ୍ୟ କୌଣସି ବିଷୟକୁ ବିଦ୍ରୂପ କରି ପ୍ରବନ୍ଧ ଲେଖିବାରେ ସିଦ୍ଧହସ୍ତ । ସମସାମୟିକ ଘଟଣାମାନଙ୍କୁ ବ୍ୟଙ୍ଗ କରି ସେ ବହୁ ପ୍ରବନ୍ଧ ରଚନା କରିଛନ୍ତି ।

ମହତାବଙ୍କ ପ୍ରବନ୍ଧର ଅନ୍ୟ ଏକ ବିଶେଷତ୍ୱ ହେଉଛି 'ଚିତ୍ରକଳ୍ପ' । ଗଦ୍ୟରେ ଚିତ୍ରକଳ୍ପଦ୍ୱାରା ସେ ବିଷୟ ଉପସ୍ଥାପନାର କୌଶଳ ଜାଣିଛନ୍ତି । ସାଧାରଣ ପାଠକ ହୃଦୟରେ ପ୍ରଭାବ ପକାଇବା ପରି ଚିତ୍ରକଳ୍ପର ବହୁଳ ଦୃଷ୍ଟାନ୍ତ ତାଙ୍କର ପ୍ରବନ୍ଧରେ ଦେଖିବାକୁ ମିଳେ । ଏଠାରେ ପ୍ରସଙ୍ଗକ୍ରମେ କେତେଗୁଡ଼ିଏ ଉଦ୍ଧାର କରାଯାଇପାରେ ।

(୧) "ଦର୍ଶନ ବିନା ରାଜନୀତି ମଙ୍ଗ ବିହୀନ ଖରସ୍ରୋତରେ ନୌକାପରି" (ଝଙ୍କାର ୨୮/୧୨ ପୃ. ୧୦୧୯)

(୨) "ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼େଇଲା ପରି ଏସବୁ କୃଷି-ସାହିତ୍ୟିକମାନଙ୍କ କଥା ମନକୁ ଆସେ ।"
(ଝଙ୍କାର ୨୮/୧୦ ପୃ. ୮୮୪)

(୩) "କିନ୍ତୁ ଏକ ବିରାଟ ବିପ୍ଳବ ବୈଶାଖ ଝଡ଼ ଭଳି ସମାଜ ଉପରେ ଗତି କରୁଛି ।" (ଝଙ୍କାର ୨୮/୬, ପୃ ୪୯୬)

ଉତ୍କଳର ମହତାବଙ୍କ ପ୍ରବନ୍ଧରେ ସିଧାସଳଖ ବିଷୟର ଆରମ୍ଭ ହୋଇଥାଏ । ସେ ବିଷୟମାନଙ୍କୁ ପାଠକର ନିକଟବର୍ତ୍ତୀ କରିବାପାଇଁ

ଏପରି କରିଥାନ୍ତି । ପାଠକକୁ ବିରକ୍ତ ନକରି, ପାଠକର ସମୟ ନଷ୍ଟ ନକରି ସେ ତାଙ୍କର ବକ୍ତବ୍ୟକୁ ପ୍ରକାଶ କରନ୍ତି । ସାଂପ୍ରତିକ କାଳରେ ପାଠକ ବିଭିନ୍ନ ବ୍ୟସ୍ତତା ଭିତରେ ଥିବାରୁ ସେ ଅଳ୍ପରେ ବହୁ ବିଷୟ ଜାଣିବାକୁ ଚେଷ୍ଟା କରୁଛି । ମହାପାତ୍ର ସିଧାସଳଖ ଭାବରେ ଜ୍ଞାନ, ବିଜ୍ଞାନ, ରାଜନୀତି, ଦର୍ଶନ, ପୁରାଣ, ଅର୍ଥନୀତି ଓ ସମାଜତତ୍ତ୍ୱ ସମ୍ପର୍କରେ ସଂକ୍ଷେପରେ ବୁଝାଇବାର ବାଟ ଭଲ ରୂପେ ଜାଣିଛନ୍ତି । ପୁଣି ତାଙ୍କର ଶାଣିତ ଦୃଷ୍ଟି ଓ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ବାସ୍ତବିକ ଉଲ୍ଲେଖଯୋଗ୍ୟ ।

ଡକ୍ଟର ମହାପାତ୍ରଙ୍କ ପ୍ରବନ୍ଧର ଗୁରୁତ୍ୱ ଅନେକାଂଶରେ ତାଙ୍କ ଭାଷାରେ ରହିଛି । କୌଣସି ବିଷୟର ଆଲୋଚନାରେ ଆପଣାର ଅନ୍ତରର ଭାଷାରେ ସେସବୁ ପ୍ରକାଶ କରିବାରେ ଡକ୍ଟର ମହାପାତ୍ରଙ୍କ କୃତିତ୍ୱକୁ ସ୍ୱୀକାର କରିବାକୁ ହେବ । ଯଥାସମ୍ଭବ ଭାବକୁ କ୍ଷତ-ବିକ୍ଷତ ନକରି ସ୍ୱାଭାବିକ ଢଙ୍ଗରେ ବ୍ୟକ୍ତ କରିବାର ଉପାୟଟି ସେ ଜାଣନ୍ତି । ତାଙ୍କର ଭାଷାରେ ଗଭୀର ଆତ୍ମ ପ୍ରତ୍ୟୟର ଭାବ ମଧ୍ୟ ବିକଶିତ । ଏ ସମ୍ପର୍କରେ ଡକ୍ଟର ମହାପାତ୍ର କହନ୍ତି, ପ୍ରତ୍ୟେକ ଲେଖକଙ୍କ ଭାଷା ଏପରି ନିଜସ୍ୱ ହୋଇଯାଏ ଯେ ପଢ଼ିଲେ, ଜଣାପଡ଼ିବ କିଏ ତା'ର ଲେଖକ । ମୋ'ର ଭାଷା ସେହିପରି ମୋର ନିଜସ୍ୱ ହୋଇଯାଇଛି ବୋଲି ଅନେକ କହନ୍ତି । ସେଥିରେ ମୁଁ ଆନନ୍ଦ ଅନୁଭବ କରେ । (ଝଙ୍କାର ୨୮/୧୦, ପୃ: ୮୮୪) ଏକଦା ଟଲଷ୍ଟୟ ମଧ୍ୟ ଔପନ୍ୟାସିକମାନଙ୍କ ସମ୍ପର୍କରେ କହିବାକୁ ଯାଇ କହିଥିଲେ । "I think every great artist necessarily creats his own form also" ଅର୍ଥାତ ପ୍ରତ୍ୟେକ ପ୍ରସିଦ୍ଧ ଲେଖକ ନିଜର ଶୈଳୀ ସୃଷ୍ଟି କରିଥାଏ । ଟଲଷ୍ଟୟଙ୍କ ଏ ମନ୍ତବ୍ୟ ମଧ୍ୟ ପ୍ରାବନ୍ଧିକ ଡକ୍ଟର ମହାପାତ୍ରଙ୍କପ୍ରତି ପ୍ରଯୋଜ୍ୟ ।

ଡକ୍ଟର ମହାପାତ୍ର ତାଙ୍କର ପ୍ରବନ୍ଧମାନଙ୍କରେ ଜଣେ ସତ୍ୟସନ୍ଧାନୀ ରୂପେ ଉଭା ହୋଇଛନ୍ତି । ଯେଉଁ ସତ୍ୟ ଯେତିକି ନିରାବରଣ; ତାହା ସେତିକି ଅନ୍ତର ସ୍ପର୍ଶୀ । ପ୍ରକାଶଭଙ୍ଗୀ ସାବଲୀଳ ହେଲେ ଓ ଚିନ୍ତା ମୌଳିକ ହେଲେ ତାହା ପାଠକର ଚିତ୍ତରେ ଆଲୋଡ଼ନ ସୃଷ୍ଟି କରେ ।

ଡକ୍ଟର ମହତାବ ତାଙ୍କର ପ୍ରବନ୍ଧମାନଙ୍କରେ ସତ୍ୟଦ୍ରଷ୍ଟା ନିଜକୁ ପ୍ରକାଶ କରିବାର ବ୍ୟାକୁଳତା ତାଙ୍କ ପ୍ରବନ୍ଧମାନଙ୍କରେ ସଚରାଚର ଉପଲବ୍ଧ । ପୋଷିତ ଚିନ୍ତାର ସ୍ୱଚ୍ଛନ୍ଦ ପ୍ରକାଶରେ, ସ୍ୱାଭାବିକ ଭଙ୍ଗୀରେ, ଅନୁଭୂତିର ଦୀପ୍ତିରେ ତାଙ୍କର ପ୍ରବନ୍ଧଗୁଡ଼ିକ ସାଧାରଣ ପାଠକଠାରୁ ଆରମ୍ଭ କରି ସୁଧୀମଣ୍ଡଳୀ ପର୍ଯ୍ୟନ୍ତ ସବୁଠି ଆଦରଣୀୟ ହୋଇପାରିଛି ।

ଓଡ଼ିଆ ବିଭାଗ,
ରେଭେନ୍‌ସା କଲେଜ, କଟକ



ଆପଣଙ୍କ ପରିବାରରେ ଭାଗବତର ଉପସ୍ଥିତି ଗଙ୍ଗା ସ୍ନାନ ପରି ଅତ୍ୟନ୍ତ ମଙ୍ଗଳପ୍ରଦ । ଏ ଯୁଗର ବ୍ୟାସ-ଶୁକଙ୍କ ଅବତାର ପରମପୂଜ୍ୟ ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ଲିଖିତ 'ଭାଗବତୀ କଥା'ର ଓଡ଼ିଆ ଅନୁବାଦ 'ଭାଗବତ କଥା'ର ପାବନୀ ଗଙ୍ଗାଧାର ବର୍ତ୍ତମାନ ସୁଦ୍ଧା ଦଶଧାରାରେ ପ୍ରବାହିତ । ୧୯୮୫ ଏପ୍ରିଲ୍ ସୁଦ୍ଧା ଆଉ ପାଞ୍ଚଧାର ପ୍ରବାହିତ ହେବାର ସମ୍ଭାବନା ରହିଛି । ଆପଣ ପରିବାରରେ ଏହି ମହାପୁଣ୍ୟପ୍ରଦ ଗଙ୍ଗାସ୍ନାନର ସୁଯୋଗ ହରାନ୍ତୁ ନାହିଁ ।

| | | |
|---|---|---|
| ଭାଗବତ କଥା | ୧ମ ଭାଗ—ମୂଲ୍ୟ | ଟ ୧୦-୦୦ |
| " | ୨ୟ ଭାଗ—ମୂଲ୍ୟ | ଟ ୧୦-୦୦ |
| " | ୩ୟ ଭାଗ—ମୂଲ୍ୟ | ଟ ୧୨-୦୦ |
| " | ୪ର୍ଥ ଭାଗ—ମୂଲ୍ୟ | ଟ ୧୨-୦୦ |
| " | ୫ମ ଭାଗ—ମୂଲ୍ୟ | ଟ ୧୫-୦୦ |
| " | ୬ଷ୍ଠ ଭାଗ—ମୂଲ୍ୟ | ଟ ୧୫-୦୦ |
| " | ୭ମ ଭାଗ—ମୂଲ୍ୟ | ଟ ୧୫-୦୦ |
| " | ୮ମ ଭାଗ—ମୂଲ୍ୟ | ଟ ୧୫-୦୦ |
| " | ୯ମ ଭାଗ—ମୂଲ୍ୟ | ଟ ୧୫-୦୦ |
| " | ୧୦ମ ଭାଗ—ମୂଲ୍ୟ | ଟ ୧୫-୦୦ |

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

କଟକ-୭୫୩୦୦୨

ଫୋନ୍ : ୨୧୯୯୩



୧୯୪୭

ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ, ରାଜ୍ୟପାଳ ଓ ତାଙ୍କ ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ ।

(ବାମରୁ ଦକ୍ଷିଣ) ରାଜକୃଷ୍ଣ ବୋଷ, ନିତ୍ୟାନନ୍ଦ କାନୁନ୍‌ଗୋ, ଡକ୍ଟର ମହତାବ,
ରାଜ୍ୟପାଳ କୈଳାସନାଥ କାଟଜୁ, ବାନଟ୍ଡ ଲାଲମୋହନ
ପଟ୍ଟନାୟକ ଓ ନବକୃଷ୍ଣ ଚୌଧୁରୀ

# ଏ ଜାତିର ପିତାମହ ଭୀଷ୍ମ

ଡକ୍‌ଟର ଗଙ୍ଗାଧର ବଳ

ମହାଭାରତ ଯୁଦ୍ଧରେ ବିଜେତା ହେଲେ ମଧ୍ୟ ଜ୍ଞାତି ବନ୍ଧୁଙ୍କର ନିଧନ ଧର୍ମପୁତ୍ର ଯୁଧିଷ୍ଠିରଙ୍କ ମନରେ ଘୋର ଅବସାଦ ଆଣିଲା । ପ୍ରାଣରେ ଶୂନ୍ୟତା, ଏକ ପ୍ରକାର ନିଃସଙ୍ଗତା ଅନୁଭବ କରି ଯୁଧିଷ୍ଠିର ଅର୍ଜୁନଙ୍କୁ କହିଲେ, "କ୍ଷତ୍ରିୟାଚାରର ପୌରୁଷକୁ ଧିକ୍ ! ଯୁଦ୍ଧରେ କୌରବ କୁଳରେ ଜୟ ହୋଇ ନାହିଁ କି, ଆମର ଜୟ ହୋଇ ନାହିଁ । ଜ୍ଞାତି-ବଧ ଜନିତ ଶୋକରେ ପ୍ରାଣ ମୋର ବିଦୀର୍ଣ୍ଣ ହେଉଛି । ରାଜ୍ୟ ଓ ରାଜ୍ୟ ଶାସନରେ ମୋର ପ୍ରୟୋଜନ ନାହିଁ । ତତ୍ତ୍ୱଜ୍ଞାନ ଲାଭ ପାଇଁ ମୋ' ପକ୍ଷରେ ତପସ୍ୟା ଏବଂ ଜୀବନ ଧାରଣ ପାଇଁ ଭିକ୍ଷାନ୍ନ ଶ୍ରେୟସ୍କର ।"

ଭାତୃଗଣଙ୍କର କାଳୋପଯୋଗୀ ପରାମର୍ଶ, ବ୍ୟାସଦେବଙ୍କର ଉପଦେଶ ତାଙ୍କ ପ୍ରାଣରେ ଶାନ୍ତି ଆଣିପାରି ନାହିଁ । ଶେଷରେ ଶ୍ରୀକୃଷ୍ଣଙ୍କ ସାନ୍ତ୍ୱନାବାକ୍ୟ ଓ ବ୍ୟାସଙ୍କର ପରାମର୍ଶରେ ଯୁଧିଷ୍ଠିର ବିଭିନ୍ନ ପ୍ରକାର ପାପକାର୍ଯ୍ୟ, ତା'ର ପ୍ରାୟଶ୍ଚିତ୍ତ ବିଧାନ ଓ ନାନା ପ୍ରକାର ଧର୍ମ ସମ୍ପର୍କରେ ଶରଶଯ୍ୟାଶାୟୀ ପିତାମହ ଭୀଷ୍ମଙ୍କ ଠାରୁ ଶୁଣିବା ପାଇଁ ଉତ୍କଣ୍ଠିତ ହୋଇ ଉଠିଛନ୍ତି ।

ଶ୍ରୀକୃଷ୍ଣଙ୍କ ଆଶୀର୍ବାଦରେ ଭୀଷ୍ମଙ୍କର ଶରଶଯ୍ୟା ଜନିତ ଗ୍ଲାନି ଓ କ୍ଷୁଧା ପିପାସା ଦୂର ହୋଇ ଯାଇଛି । ଦିବ୍ୟଦୃଷ୍ଟି ଲାଭ ଫଳରେ ତାଙ୍କ ନିକଟରେ ସକଳ ଜ୍ଞାନ ପ୍ରକାଶିତ ହୋଇଛି । ପୁରୁଷଶ୍ରେଷ୍ଠ ଭୀଷ୍ମଙ୍କ ମୁଖରୁ ରାଜଧର୍ମ, ବର୍ଣ୍ଣାଶ୍ରମ ଧର୍ମ, ଆପଦ୍ ଧର୍ମ, ଆତ୍ମଜ୍ଞାନ ଓ ସୃଷ୍ଟି ତତ୍ତ୍ୱ

ସମ୍ପର୍କରେ ବହୁ ଉପଦେଶ ଓ ଉପାଖ୍ୟାନ ଶୁଣି ଯୁଧିଷ୍ଠିର ଶୋକ ସନ୍ତପ୍ତ ଚିତ୍ତକୁ ଆଶ୍ୱସ୍ତ କରିଛନ୍ତି ।

ଓଡ଼ିଶା କାହିଁକି, ସମଗ୍ର ଭାରତ ଯେପରି ସଙ୍କଟ ମଧ୍ୟରେ ଗତି କରୁଛି, ମହାତ୍ମାଗାନ୍ଧୀଙ୍କ ଠାରୁ ଆରମ୍ଭ କରି ଅନ୍ୟ ପ୍ରାଜ୍ଞ ବର୍ଷୀୟାନ୍ ଦେଶପ୍ରେମୀ ନେତୃବୃନ୍ଦ ଯେତେବେଳେ ଆମ ଆଖି ଆଗରୁ ଅପସରି ଗଲେଣି, ଏତେବେଳେ ଦେଶର ଅଖଣ୍ଡତା, ଜାତୀୟ ସଂହତି, ଶାସନ ତଥା ସମାଜ ଓ ଜାତୀୟଜୀବନରେ ଶୃଙ୍ଖଳା ଯେ ଜରୁରୀ, ପ୍ରତ୍ୟେକ ନାଗରିକ ମର୍ମେ ମର୍ମେ ଉପଲବ୍ଧି କରୁଥିବେ । ଦେଶର ଏ ଦୁର୍ଦ୍ଦିନରେ କେବଳ ଉତ୍କଳୀୟ ପରିପ୍ରେକ୍ଷୀରେ କାହିଁକି, ସମଗ୍ର ଭାରତୀୟ ପରିପ୍ରେକ୍ଷୀରେ ବିଶାଳ ଉତ୍କଳର ନିର୍ମାତା ବର୍ଷିୟାନ୍ ସ୍ଥିତପ୍ରଜ୍ଞ ଉତ୍କଳର ମହତାବ ପିତାମହ ଭୀଷ୍ମଙ୍କ ପରି ଯେ ଆମର ଜାତୀୟ ଚେତନାର ଏକ ଜାଗ୍ରତ ପ୍ରହରୀ, ଏହା ପ୍ରତ୍ୟେକ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । କୈଶୋରାବଧି ସାମାଜିକ ତଥା ରାଜନୈତିକ ଜୀବନର ନାନା ଘାତ ପ୍ରତିଘାତ ମଧ୍ୟରେ ଗଢି ଉଠିଥିବା ଏ ପୁରୁଷ-ସିଂହର ବ୍ୟକ୍ତିତ୍ୱ ଆମ ପକ୍ଷରେ କମ ଆକର୍ଷଣୀୟ ନୁହେଁ ।

ଅଗରପଡ଼ାରେ ତାଙ୍କର କୌଳିକ ଆଭିଜାତ୍ୟ, ଭଦ୍ରକର ମହତାବ କୋଠି, ବିହାରୀବାଗରେ ପ୍ରଜାତନ୍ତ୍ର ବିହାରର ବିପୁଳତା ଓ ଓ ଗାମ୍ଭୀର୍ଯ୍ୟ ଏଣେ ଏକାମ୍ର ନିବାସ : ଏ ସବୁ ଲକ୍ଷ୍ୟ କଲେ ମନେହେବ ଏକ ବିଶାଳ ବଟବୃକ୍ଷ ତା'ର ଶାଖାଗୁଡ଼ିକୁ ଚତୁର୍ଦ୍ଦିଗରେ ବିସ୍ତାର କରି ଓହଳଗୁଡ଼ିକୁ ଅତଳସ୍ପର୍ଶୀ କରିଛି; କିନ୍ତୁ ଏ ବିସ୍ତୃତି, ଅତଳସ୍ପର୍ଶିତ୍ୱ ସତ୍ତ୍ୱେ ମନେହୁଏ : ମନେହୁଏ ସତେ ଯେପରି ବୃକ୍ଷଟି ନିଃସଙ୍ଗ, ନିର୍ଲିପ୍ତ ଓ ଉଦାସୀନ । ଅପାତ ଦୃଶ୍ୟମାନ ଆଭିଜାତ୍ୟ, ଗାମ୍ଭୀର୍ଯ୍ୟ ଓ ବିପୁଳତା ସତେ ଯେପରି ଛଦ୍ମାବରଣ । ଏଇ ଦୃପ୍ତ କର୍ମକୁଶଳ କେଶରୀ ତାଙ୍କ ଆଭିଜାତ୍ୟ ପୁର୍ଦ୍ଧିତ ବଂଶର ଏକ ପ୍ରଚଣ୍ଡ ବିଦ୍ରୋହୀ । ଯୌବନରେ ଜମିଦାରର ଐଶ୍ୱର୍ଯ୍ୟ ଓ ବିଳାସିତା ମୂଳରେ କୁଠାରାଘାତ କରି ଯେ ଖାତି, ଅବହେଳିତ, ନିରନ୍ନର କାନ୍ଧରେ ହାତ ଦେଇ ଚାଲିଲେ : ଜନସେବାରେ ଦେଶସେବାର ମୂଳଦୁଆ ପକାଇ ସମ୍ମୁଖସ୍ଥ ସମସ୍ତ ବାଧା ପ୍ରତିବନ୍ଧକକୁ ଶିରୋଭୂଷଣ ପ୍ରାପ୍ତ କଲେ; ଦେଶ ଓ ଜାତିର ମୁକ୍ତିପାଇଁ

ଜୀବନ ପରିକର ହସି ହସି ବିପଦର ଆବର୍ତ୍ତରେ ନିଜକୁ ନିକ୍ଷେପ କରୁଥିଲେ, ଆଜି ଦେଶର ସଙ୍କଟପୂର୍ଣ୍ଣ ପରିପ୍ରେକ୍ଷୀରେ ତାଙ୍କର ବ୍ୟକ୍ତିତ୍ୱ ଓ ବାଣୀର ଗୁରୁତ୍ୱ ଉପଲବ୍ଧି ଆମ ପକ୍ଷରେ ଏକାନ୍ତ ଜରୁରୀ ।

ଦୀର୍ଘକାଳ ଧରି ପ୍ରିୟ 'ପ୍ରଜାତନ୍ତ୍ର' ପୃଷ୍ଠାରେ ଗୁଳୁଛି ତାଙ୍କର ଏକ ବଳିଷ୍ଠ ଚେତନଶୀଳ ମନର ଅଭିଯାନ । ଏ ଅଭିଯାନରେ ନାହିଁ ତାଙ୍କର ପାଣ୍ଡିତ୍ୟର ପ୍ରୌଢ଼ି, ନାହିଁ ବୌଦ୍ଧିକତା ଶାଣିତ ଶ୍ଳେଷ୍ମ ଯୁକ୍ତି ଜାଲର ଧନ୍ଦା । ଆମର ଦେଶ, ଆମର ସମାଜର ବିକାଶ ଦୃଷ୍ଟିରୁ ଅଗଣିତ ସମସ୍ୟା ସମ୍ପର୍କରେ ଦେଶର ପଲିଦୁଆ ଗାଁର ଲୋକଙ୍କୁ ସହଜ ସ୍ୱାଭାବିକ ଭଙ୍ଗୀରେ ଅବଗତ କରାଇବା ତାଙ୍କର ଲକ୍ଷ୍ୟ । 'ଗାଁ ମଜଲିସ୍'ର ପ୍ରତ୍ୟେକଟି ଲେଖା କେତେ ସହଜ, କେତେ ସରଳ ଅଥଚ କେତେ ଶକ୍ତିଶାଳୀ !

ମୁକ୍ତି ସଂଗ୍ରାମ କାଳରେ ଇଂରେଜ ସରକାରର ଲାଠି ପ୍ରହାର ଖାଇ, ସଶ୍ରମ କାରାଦଣ୍ଡ ଭୋଗି ଏ ନୃସିଂହ କେବେ ଭାଙ୍ଗି ପଡ଼ି ନ ଥିଲେ । ସ୍ୱାଧୀନତା ପୂର୍ବ ଓ ପରେ ରାଜନୀତି ଓ ଶାସନ କ୍ଷେତ୍ରରେ ନିଜର ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଦେଇଛନ୍ତି ରାଜ୍ୟର ବିକାଶମୂଳକ ଯୋଜନାର ପରିକଳ୍ପନା ଓ ସେଗୁଡ଼ିକର କାର୍ଯ୍ୟକାରିତାରେ । ଏଇ ନୃସିଂହ କେଉଁଣି ଶୈଶବରୁ ଯେଉଁ ସଂସ୍କାର, ଯେଉଁ ମୂଲ୍ୟବୋଧ, ଯେଉଁ ନୈତିକ ତଥା ଆଧ୍ୟାତ୍ମିକ ଭିତ୍ତିରେ ନିଜକୁ ଗଢ଼ି ଆସିଥିଲେ, ତା'ର ସୁଫଳ ସେ ନିଜଠାରେ ଆବଦ୍ଧ କରିନାହାଁନ୍ତି, ତାହା ସମଗ୍ର ଦେଶରେ ବୃହତ୍ତର ଜୀବନରେ ପରିବ୍ୟାପ୍ତ କରି ଦେଇଛନ୍ତି । ଭୌତିକ ବିକାଶ ସହ ବୌଦ୍ଧିକ ତଥା ଆତ୍ମିକ ବିକାଶର ସମନ୍ୱୟ ନ ଘଟିଲେ ଦେଶ କି ସଙ୍କଟର ସମ୍ମୁଖୀନ ହୁଏ, ସାଂପ୍ରତିକ ବହୁ ସମସ୍ୟା, ବର୍ତ୍ତମାନର ଜାତୀୟ ସଙ୍କଟ ତା'ର ଜ୍ୱଳନ୍ତ ସାକ୍ଷୀ । ସେଥିପାଇଁ ତ ପ୍ରଜାତନ୍ତ୍ର ବିହାରର ପରିକଳ୍ପନା ଏଇ ପୁରୁଷ ସିଂହଙ୍କର ଓଡ଼ିଆ ଜାତିକୁ ଏକ ଅପୂର୍ବ ଅବଦାନ, ଓଡ଼ିଆ ଜାତିର ଏହା ଏକ ଅପୂର୍ବ ସାରସ୍ୱତ ମିଳନ ପୀଠ । ଏଇ ପୀଠରୁ କେତେ ଲେଖକ, କେତେ କବି, କେତେ କଳାକାରଙ୍କର ଆବିର୍ଭାବ ହେଲାଣି । ପୁଣି ବିଷୁବ ଉତ୍ସବରେ ଏମାନଙ୍କୁ ମିଳିତ କରାଇ ନିଜର ସ୍ନେହ, ଆନ୍ତରିକତା

ଓ ଉତ୍ସାହ ମନ୍ତ୍ରରେ ଅଭିଷିକ୍ତ କରି ଏଇ ପୁରୁଷ ସିଂହ କେତେ ସମ୍ଭାବନାର ଦିଗନ୍ତ ଉନ୍ମୋଚନ ନ କରିଛନ୍ତି । କି ଶିଶୁ, କି କିଶୋର, କି ପ୍ରୌଢ଼, କି ବୃଦ୍ଧ ଯା'ର କିଛି ପ୍ରତିଭା ରହିଛି, ସମସ୍ତେ ତାଙ୍କ ସ୍ନେହ ସୂତ୍ରରେ ବନ୍ଧା ।

ଏଇ ପୁରୁଷ ସିଂହ କାୟମନୋବାକ୍ୟରେ ଓଡ଼ିଆ ଜାତିର ସେବା କରି ଆସିଛି, କୌଣସି ଲାଭର ପ୍ରତ୍ୟାଶାରେ ନୁହେଁ; ଓଡ଼ିଆ ଜାତିକୁ ଉନ୍ନତରୁ ଉନ୍ନତତର କରି ଦେଖିବା ପାଇଁ; ଏହା କେବଳ ଜଣେ ଅନାସକ୍ତ, ସ୍ଥିତଧୀ ଦେଶ ସେବକର ସ୍ୱପ୍ନ । ସେଥିପାଇଁତ ତାଙ୍କର ଚେତନା ପ୍ରୋଜ୍ଜ୍ୱଳ ଲେଖନୀର ଧାରା ଅପ୍ରତିହତ । ପିତାମହ ଭୀଷ୍ମଙ୍କ ପରି ଜାତୀୟ ଜୀବନ ରୂପୀ କୁରୁକ୍ଷେତ୍ରରେ ସେ ନାନା ଦିଗରୁ ଶରାହତ—ଶରଶଯ୍ୟାକୁ ତ ସେ ପ୍ରକୃତ ବୀରର ଶଯ୍ୟା ବୋଲି ସ୍ୱାଗତ କରିଛନ୍ତି । ବାରମ୍ବାର ଚେତାବନୀ ସତ୍ତ୍ୱେ କେତେ ଅଭିମାନୀ ଦୁର୍ଯ୍ୟୋଧନଙ୍କର; କେତେ ମୂଢ଼ ଦୁଃଶାସନଙ୍କର ତାଙ୍କ ବାଣୀ ପ୍ରତି ଭ୍ରୂକ୍ଷେପ ନାହିଁ, ତଥାପି ଦେଶ ଓ ଜାତିର କଲ୍ୟାଣ କଳ୍ପେ ଲେଖନୀରୁ ତାଙ୍କର କାଳୋପଯୋଗୀ ବାଣୀ ଝରୁଛି, ଝରୁଥିବ ।

ଏଇ ଦୃପ୍ତ ସିଂହ କେତେ କବି, କେତେ ଲେଖକ, କେତେ ନେତା ସୃଷ୍ଟି କରିଛନ୍ତି, କିନ୍ତୁ ସ୍ରଷ୍ଟାର ଅଭିମାନ ତାଙ୍କର ନାହିଁ । ତାଙ୍କ ସୃଷ୍ଟ କେତେ ନେତା ତାଙ୍କୁ ଉପେକ୍ଷା କରିଛନ୍ତି, ସେଥିପ୍ରତି ତାଙ୍କର କ୍ଷୋଭ ନାହିଁ, ଭ୍ରୂକ୍ଷେପ ବି ନାହିଁ । ସୁଖ ଦୁଃଖ, ଶତ୍ରୁ ମିତ୍ର, ଉତ୍‌ଥାନ ପତନ; ସୁଦିନ ଓ ଦୁର୍ଦ୍ଦିନ ସବୁ ପ୍ରତି ତାଙ୍କର ସମଦୃଷ୍ଟି ତାଙ୍କୁ ଏ ପର୍ଯ୍ୟନ୍ତ ଦୃଢ଼, ଅବିଚଳିତ ରଖିଛି । ଏ ପ୍ରକାର ସମଦର୍ଶୀ ସ୍ନେହୀ ଗୁଣଗ୍ରାହୀ ଓ ସେବା ପରାୟଣ ବ୍ୟକ୍ତିତ୍ୱ କା'ର ନମସ୍ୟ ନୁହେଁ ? ଏ ଜାତିର ସେବା ପାଇଁ ଈଶ୍ୱର ତାଙ୍କୁ ଦୀର୍ଘାୟୁ କରନ୍ତୁ, ତାଙ୍କର ୮୭ତମ ଜନ୍ମବାସରରେ ଏହାହିଁ ଆମର ଐକାନ୍ତିକ ପ୍ରାର୍ଥନା ।



# ସଂସ୍କୃତିର ସାମ୍ରାଜ୍ୟ

**ଶ୍ରୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ**

ମହତାବ ! ଡକ୍ଟର ହରେକୃଷ୍ଣ ମହତାବ—ଓଡ଼ିଶାର ତୁଙ୍ଗ ନେତା, ଜନନାୟକ, ସଂଗ୍ରାମୀ, ଐତିହାସିକ, ସାହିତ୍ୟିକ, ସମାଜସେବୀ ମହତାବ । ଓଡ଼ିଶାର ତୁଙ୍ଗ ନେତା ହିସାବରେ ସେ ସର୍ବଭାରତୀୟ ଖ୍ୟାତି ଓ ସ୍ୱୀକୃତିର ଅଧିକାରୀ ।

ଅତୀତରେ ଅଗରପଡ଼ାର ବିଶିଷ୍ଟ ଜମିଦାର ପରିବାରର ସମସ୍ତ ଆଭିଜାତ୍ୟ ନେଇ ଜନ୍ମଲାଭ କରିଥିବା ମହତାବ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ଜାତିର ସେବକ ଓ ବିପ୍ଳବୀ କର୍ମୀ ରୂପେ ଅବତୀର୍ଣ୍ଣ ହୁଅନ୍ତି ।

ଆନ୍ଦୋଳନ ପରେ ଉତ୍କଳର ନେତା, କଂଗ୍ରେସ ଦଳର ନେତା, ପରାଧୀନ ଭାରତରେ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ମହତାବ । ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଆବିର୍ଭାବ ପରେ ରାଜନୀତିରେ ସଂସ୍କାରବାଦୀ— ଅଖିଳ ଭାରତୀୟ କଂଗ୍ରେସ କମିଟିର ପ୍ରଥମ ଓଡ଼ିଆ ସଭ୍ୟ ରୂପେ ଗୃହୀତ ହୁଅନ୍ତି ।

ମହତାବଙ୍କ ଅବଦାନ—ଆଜିର ଭୁବନେଶ୍ୱରସ୍ଥ ନୂଆ ରାଜଧାନୀ ସମ୍ବଲପୁର ନିକଟବର୍ତ୍ତୀ ହୀରାକୁଦ ବନ୍ଧର ଯୋଜନା ଓ ନିର୍ମାଣ ଏବଂ ସର୍ବୋପରି ସ୍ୱାଧୀନ ଭାରତରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହିସାବରେ ଓଡ଼ିଶା ସହିତ ୨୪ ଗୋଟି ପୂର୍ବତନ ଦେଶୀୟ ରାଜ୍ୟର ମିଶ୍ରଣ ତାଙ୍କର କୀର୍ତ୍ତି ।

ସ୍ୱାଧୀନତା ଲାଭ ପରେ ବ୍ରିଟିଶ ଶାସନାଧୀନ ରାଜ୍ୟ ଗୁଡ଼ିକ ସହ ଓଡ଼ିଶାର ୨୬ଟି ଗଡ଼ଜାତ ରାଜ୍ୟ ମଧ୍ୟପ୍ରଦେଶର ୧୪ଟି ଓ ଅନ୍ୟାନ୍ୟ

ଅଞ୍ଚଳରେ ଶତାଧିକ ଦେଶୀୟ ରାଜ୍ୟ ମଧ୍ୟ ସ୍ୱାଧୀନ ହୁଅନ୍ତି । ବ୍ରିଟିଶ ସରକାରଙ୍କ **Divide and Rule** ପଲିସି ଦ୍ୱାରା ଭାରତବର୍ଷ ସାମ୍ପ୍ରଦାୟିକ, ରାଜନୈତିକ ଓ ଆଞ୍ଚଳିକ ଭିତ୍ତିରେ ଶତଧା ବିଭକ୍ତ ହେବାର ଆଶଙ୍କା ଜାଗରୁକ ହୁଏ । ଗଡ଼ଜାତ ଅଞ୍ଚଳମାନଙ୍କରେ ଅଶାନ୍ତି ଓ ବିଶୃଙ୍ଖଳା ହେତୁ ସାମାଜିକ ଜୀବନ ନଷ୍ଟଭ୍ରଷ୍ଟ ଓ ଭବିଷ୍ୟତ ଅନିଶ୍ଚିତତାରେ ପୂର୍ଣ୍ଣ ହୁଏ ।

ବ୍ରିଟିଶ ରାଜ୍ୟ ସମୂହରେ ମଧ୍ୟ ସାମ୍ପ୍ରଦାୟିକ ଦଙ୍ଗାଗୋଳ-ଲୁଟ-ତରାଜ ହିଂସା-ପ୍ରତିହିଂସା ପାରସ୍ପରିକ ଆକ୍ରମଣ ଓ ଏଥି ସହ ଗଡ଼ଜାତ ଅଞ୍ଚଳମାନଙ୍କରେ ପ୍ରଜାତନ୍ତ୍ର ପିପାସୁ ପ୍ରଜାବୃନ୍ଦଙ୍କ ଅଦମନୀୟ ଆନ୍ଦୋଳନ ଭାରତୀୟ ରାଜନୈତିକ ଓ ସାମାଜିକ ଜୀବନକୁ ଛିନ୍ନଭିନ୍ନ ଓ ବିପନ୍ନ କରେ ।

ଏତକ ବେଳେ ଓଡ଼ିଶାର ଏକ କ୍ଷୁଦ୍ର ଗଡ଼ଜାତ ନୀଳଗିରିରେ ଆଦିବାସୀମାନଙ୍କ ସଂଗଠିତ ବିଦ୍ରୋହ ଅଣଆଦିବାସୀଙ୍କ ସ୍ଥାବରାସ୍ଥାବର ସମ୍ପତ୍ତି ଉପରେ ଆଦିବାସୀଙ୍କ ସଂଗଠିତ ଓ ହିଂସା ଆକ୍ରମଣ ହେତୁ ନୀଳଗିରି ଶାସନକଳର ସୁଷ୍ଠୁରୂପେ ପରିଚାଳନା କରିବା ପାଇଁ ରାଜ ଶାସକଙ୍କ ପକ୍ଷରେ ଅସମ୍ଭବ ହୋଇ ଉଠେ ।

ଏ ସୁଯୋଗରେ ମହତାବ କେନ୍ଦ୍ରୀୟ ଘରୋଇ ବିଭାଗର ସାହାଯ୍ୟ ଓ ଅନୁମତି ପାଇ ନୀଳଗିରି ଅଧିକାର କରିଥିଲେ । ତଦାନୀନ୍ତନ ଘରୋଇ ମନ୍ତ୍ରୀ ସରଦାର ପଟେଲଙ୍କୁ ଓଡ଼ିଶାକୁ ଆସିବାକୁ ଆମନ୍ତ୍ରଣ କରନ୍ତି ।

ସର୍ଦ୍ଦାର ପଟେଲ କଟକକୁ ଶୁଭାଗମନ କରନ୍ତି । ରାଷ୍ଟ୍ରୀୟ ଦପ୍ତରରୁ ସମସ୍ତ ରାଜା ମହାରାଜା ଓ ଶାସକବର୍ଗଙ୍କୁ ନିମନ୍ତ୍ରଣ କରାଯାଏ । ଘରୋଇ ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ସହ ସାକ୍ଷାତ୍ ଓ ଆଲୋଚନା ହୁଏ ।

କଟକରେ ଜନସମାଗମ ହୁଏ । ଖଦୀବସ୍ତ୍ରଧାରୀ ଓ ଗାନ୍ଧୀ ଟୋପି ଭୂଷିତ ଅସଂଖ୍ୟ ନେତା ଓ କର୍ମୀ କଟକର ରାଜରାସ୍ତାରେ ଘୂରିବୁଲନ୍ତି ।

କେହି ବିଶ୍ୱର ପୂର୍ବକ, କେହି ସମୟର ବିପ୍ଳବ-ମୟ ସ୍ରୋତକୁ ରୋକି ପାରିବାର ସମ୍ଭାବନା ନ ଦେଖି କେହି ବା ଆଶଙ୍କାରେ ଅନିଚ୍ଛା

ସତ୍ତ୍ୱେ ଭାରତୀୟ ରାଷ୍ଟ୍ରଜୀବନର ଅଙ୍ଗ ରୂପେ ନିଜକୁ ସାମିଲ କରିବାକୁ ଶାସକବର୍ଗ ଚୁକ୍ତିବଦ୍ଧ ହୋଇ ସ୍ୱାକ୍ଷର କରନ୍ତି ।

ଏତଦ୍ ବ୍ୟତୀତ ଆହୁରି ବହୁ କୀର୍ତ୍ତି ଅବଦାନ ରହିଛି ଯେଉଁଥି ପାଇଁ ମହତାବଙ୍କ ନିଜସ୍ୱ କୀର୍ତ୍ତିରେ କୀର୍ତ୍ତିମାନ । ସେ ରାଜନୈତିକ ଓ ପ୍ରଶାସନିକ କ୍ଷେତ୍ରରୁ ବିଦାୟ ନେଇଥିଲେ ହେଁ ସାଂସ୍କୃତିକ କ୍ଷେତ୍ରରେ କ୍ରମବର୍ଦ୍ଧମାନ ହୋଇ ଆସିଛନ୍ତି । ତାଙ୍କ ସାଂସ୍କୃତିକ ସାମ୍ରାଜ୍ୟ ଓଡ଼ିଶାର ଏମୁଣ୍ଡରୁ ସେମୁଣ୍ଡ ଯାଏ ବ୍ୟାପ୍ତ ଓ ସମୃଦ୍ଧି ସାହିତ୍ୟ-କଳା ସଂସ୍କୃତିର ଅହରହ ଉପାସନା ସେଇଠି ଚାଲେ । ସାହିତ୍ୟିକ, କଳାକାର, ଗାଳ୍ପିକ, ଔପନ୍ୟାସିକ ଓ ଧାର୍ମିକ ବ୍ୟକ୍ତିଗଣ ତାଙ୍କ ସାମ୍ରାଜ୍ୟର ଅଧିବାସୀ ।

ତାଙ୍କର 'ପ୍ରଜାତନ୍ତ୍ର' ଅଛି । 'ପ୍ରଜାତନ୍ତ୍ର' ସାଙ୍ଗକୁ 'ଝଙ୍କାର' "ଅବ୍ୟାପାର", କୃଷ୍ଣାୟ ପତ୍ର ଓ ୧୯୭୫ ଗବେସଣାବାରେ ପ୍ରକାଶିତ । ତାଙ୍କ କର୍ମ-କୁଶଳତା ଅନନ୍ୟ । ତାଙ୍କ ଲେଖଣୀର ବିରାମ ନାହିଁ । ସେ ବେଳେ ବେଳେ "ଆମି କ୍ଳାନ୍ତ ଆମି ଶ୍ରାନ୍ତ" ବୋଲି କହିଥିଲେହେଁ ତାଙ୍କର କ୍ଳାନ୍ତି ନାହିଁ । ତାଙ୍କ ପ୍ରତିଷ୍ଠିତ ରାଜ୍ୟରେ ସ୍କୁଲ ଶିକ୍ଷାନୁଷ୍ଠାନ, କଲେଜ, ପାଠାଗାର, ଯୁବସଙ୍ଗଠନ, ମୀନାବଜାର ରହିଛି । ସେ ପଣ୍ଡିତସଭା, ତର୍କସଭା, ଆଲୋଚନା ସଭା ଆହ୍ୱାନ କରନ୍ତି । ପୁରସ୍କାର ମାଧ୍ୟମରେ ଗୁଣୀଜନଙ୍କୁ ସ୍ୱୀକୃତି ଓ ସମ୍ମାନ ଦିଅନ୍ତି । ଏବେ ଏ ପରିଣତ ବୟସରେ ମଧ୍ୟ ତାଙ୍କ ପରିଶ୍ରମ, ଦକ୍ଷତା ଓ ଧୈର୍ଯ୍ୟର ଅବକାଶ ନାହିଁ । ଓଡ଼ିଶାର ଭୌଗୋଳିକ ପରିସର ଅତିକ୍ରମ କରି ତାଙ୍କର ଏହି ସାଂସ୍କୃତିକ ପରିସର ପରିବ୍ୟାପ୍ତ । ଅଗଣିତ କଳାକାର, କବି, ସାହିତ୍ୟିକ ଓ ଲେଖକଙ୍କୁ ସେ ସୃଷ୍ଟି କରନ୍ତି । ତାଙ୍କ ଆଗ୍ରହ, ଉତ୍ସାହ ଓ ପ୍ରେରଣାରେ କବି ଜାଗ୍ରତ ହୁଅନ୍ତି ଓ ସଂସ୍କୃତି ଓ ସାହିତ୍ୟର 'ଝଙ୍କାର' ତୋଳନ୍ତି । ତାଙ୍କର ଏ ସାହିତ୍ୟ ଓ ସଂସ୍କୃତିର ମୂଳଭିତ୍ତି ଏବଂ ସର୍ବୋପରି ବିଷ୍ଣୁବ ମିଳନ । "ପ୍ରଜାତନ୍ତ୍ର" 'ଝଙ୍କାର' ଓ 'ମୀନାବଜାର' ପ୍ରଜାତନ୍ତ୍ର ପରିସର ହେଉଛି ସଂସ୍କୃତିର ସମାଗମପୀଠ । ଏ ପୀଠରେ ସେ ଗ୍ରାମ୍ୟ ଲୋକଙ୍କୁ ନେଇ 'ମଜଲିସ' କରନ୍ତି । ସେ ନିଜେ ଏକ ସଫଳ କଳାକାର । ସେ ଯେଉଁ ବିଷୟକୁ ଛୁଇଁଛନ୍ତି ସେ ବିଷୟରେ ତାଙ୍କ ସାହିତ୍ୟ ସୃଜନୀ ଶକ୍ତି ସୁନ୍ଦର କରିଛି । ସେ ସାହିତ୍ୟିକ ଚରିତ୍ର ସୃଷ୍ଟି କରନ୍ତି । ତାଙ୍କ ସାହିତ୍ୟ

ମାନବଧର୍ମୀ ଓ ବାସ୍ତବଧର୍ମୀ—ତାହା ଅପଥା କଳ୍ପନା-ବିଳାସ ନୁହେଁ । ଜୀବନର ଦୈନନ୍ଦିନ ସମସ୍ୟାବଳୀ ତାଙ୍କ ସାହିତ୍ୟରେ ସ୍ଥାନ ପାଆନ୍ତି । ସେ ନିର୍ଲିପ୍ତ ରୁହନ୍ତି; ତଥାପି ସାମାଜିକ ଓ ରାଷ୍ଟ୍ରୀୟ ସମସ୍ୟା ଗୁଡ଼ିକରେ ଓତପ୍ରୋତଃ ଭାବରେ ସଂପୃକ୍ତ ।

ସେ ନିର୍ଭୀକ । ଏ ନିର୍ଭୀକତା ଗତ ଜରୁରୀକାଳୀନ ପରିସ୍ଥିତି ବେଳେ ପ୍ରକଟିତ ହୋଇଛି । ତାଙ୍କର ଲେଖନୀ ସାର୍ବଜନୀନ ଭାବଧାରାର ପ୍ରସାର କରେ । ଓଡ଼ିଶାର ହିତ ଓ ସ୍ୱାର୍ଥ ଦୃଷ୍ଟିରୁ ଏ ଦେଶର ସମସ୍ୟା-ବଳୀ ସହିତ ଯେଉଁମାନେ ସଂପୃକ୍ତ, ସେମାନଙ୍କୁ ସେ 'ଓଡ଼ିଆ' ବୋଲି ଅଭିହିତ କରନ୍ତି । ସେ ଧର୍ମବିଶ୍ୱାସୀ—ସେ ଧର୍ମ କିନ୍ତୁ ସାର୍ବଜନୀନ । ସେ ଓଡ଼ିଶାର ଇତିହାସ ଲେଖନ୍ତି ଓ ସେହିଁ ଓଡ଼ିଶାର ଇତିହାସ ସୃଷ୍ଟି କରନ୍ତି । ସେ ବହୁମୁଖୀ ପ୍ରତିଭାର ଅଧିକାରୀ । ଛାତ୍ର ଯୁବସମାଜ ପ୍ରତି ସେ ସହାନୁଭୂତିଶୀଳ । ସେ ପୁରୁଣାର ଛାଞ୍ଚରେ ନୂଆଁ ଗଢ଼ନ୍ତି । ବିଂଶ ଶତାବ୍ଦୀର ଅର୍ଦ୍ଧାଧିକ କାଳ ସେ ଓଡ଼ିଶାର ଜନଜୀବନକୁ ପ୍ରଭାବିତ ଓ ଜାଗ୍ରତ କରି ଆସିଛନ୍ତି । ଏହା ଶତାବ୍ଦୀ-ବ୍ୟାପୀ ସାଧନାର ପରିତୃପ୍ତତା ଲାଭ କରୁ, ଏତିକି କାମନା ।





ଲୌହମାନବ ସର୍ଦ୍ଦାର ପଟେଲଙ୍କ ସହିତ
ଗଡ଼଼ଜାତ ମିଶ୍ରଣର ନାୟକ ଡକ୍‌ଟର ମହତାବ

# ଶତାବ୍ଦୀର ସୂର୍ଯ୍ୟ

## ଡାକ୍ତର ଜିତେନ୍ଦ୍ର କୁମାର ବଳବନ୍ତରାୟ

ଊନବିଂଶ ଶତାବ୍ଦୀରୁ ଆବିର୍ଭାବ । ବିଂଶ ଶତାବ୍ଦୀ ଗତାୟୁ ପ୍ରାୟ । ତୁମର ଆଲୋକ-ନିର୍ଝର ଏ ଶତାବ୍ଦୀକୁ ବର୍ଷି ଚାଲିଛୁ ଶତାବ୍ଦୀର ଆରମ୍ଭ ଠାରୁ । ଶତାବ୍ଦୀ ଅତିକ୍ରାନ୍ତପ୍ରାୟ । କିନ୍ତୁ ତମକୁ ଧରି ଶତାବ୍ଦୀ ବଞ୍ଚିଯିବ ଏକ ଅଭୂତପୂର୍ବ ଇତିହାସ ରଚନା କରି । ତୁମେ ଏକ ଜୀବନ୍ତ Legend ହୋଇ ରହିଯିବ ଐତିହାସିକ, ସାହିତ୍ୟିକ, ରାଜନୀତିଜ୍ଞ, ସଂସ୍କାରକ, ଧାର୍ମିକଗୋଷ୍ଠୀ ମହଲରେ । ହେ ଶତାବ୍ଦୀ-ସାରଥି, ହେ ଓଡ଼ିଶାର ବ୍ରହ୍ମା, ବିଷ୍ଣୁ, ଶିବ, ମହାତ୍ମା ମହତାବଜି ! ଆଜି ଏ ଜୟନ୍ତୀ ଅବସରରେ ତୁମକୁ ମୋର ଶ୍ରଦ୍ଧାପ୍ଳୁତ ସଭକ୍ତି ପ୍ରଣତି ।

ତୁମର ରାଜନୈତିକ ବ୍ୟକ୍ତିତ୍ୱ ଏକ ଅପରାଜେୟ ବ୍ୟକ୍ତିତ୍ୱ, ଅମାପ ତୁମର ନେତୃତ୍ୱ । ଏ ଜାତିର ତୁମେ ପ୍ରେରଣାର ଉତ୍ସ । ଏ ଜାତି ଗଠନରେ ମହାରଥୀ ତୁମେ । ସ୍ୱାଧୀନତା ସଂଗ୍ରାମ, ଗଡ଼ଜାତ ମିଶ୍ରଣ, ଶାସନ ସଂସ୍କାର ଆଦି ବିଭିନ୍ନ ସଙ୍କଟ ମୁହୂର୍ତ୍ତରେ ତୁମେହିଁ ଏକ ଅପ୍ରତିଦ୍ୱନ୍ଦୀ ମେରୁଦଣ୍ଡ ରୂପେ ରହି ଆସିଛ । ପରିଣତ ବୟସରେ ଆଜି ତୁମେ ଓଡ଼ିଶାର ସବୁ କ୍ଷେତ୍ରରେ ସକ୍ରିୟ ଭାବେ ଯୋଗଦେଇ ଚାଷୀ, ମୂଲିଆ, ଧନୀ, ଦରିଦ୍ର, କବି, ଲେଖକ, ନାଟ୍ୟକାର, ବୃଦ୍ଧ, ଯୁବକ ସରକାରୀ, ବେସରକାରୀ ଲୋକମାନଙ୍କୁ ଦଳମତ ନିର୍ବିଶେଷରେ ଯେଉଁ ଦିଗ୍‌ଦର୍ଶନ ଦେଇ ଆସୁଛ, ସେଥିପାଇଁ ତୁମେ ହେଉଛ ଓଡ଼ିଶା ଜନତାର ଅଦ୍ୱିତୀୟ ନେତା ଓ କାଣ୍ଡାରି ।

ଓଡ଼ିଆ ସାହିତ୍ୟକୁ ତୁମର ଅବଦାନ ଅବିସ୍ମରଣୀୟ ! ପ୍ରତ୍ୟକ୍ଷ ରାଜନୀତିରେ ସଂଶ୍ଳିଷ୍ଟ ଥାଇ କୌଣସି ବ୍ୟକ୍ତି ଜାତିର ଭାଷା-ସାହିତ୍ୟ

ସଂସ୍କୃତିର ଜୀବନ୍ତ ଅନୁଷ୍ଠାନ ହେବା ବରଳ । ପ୍ରତ୍ୟକ୍ଷ ରାଜନୀତିରୁ ସ୍ୱତଃସ୍ଫୂର୍ତ୍ତ ଭାବେ ସାହିତ୍ୟର ସୀମା ଭିତରକୁ ଆସିବା କେବଳ ତୁମ ପକ୍ଷରେ ସମ୍ଭବ ହୋଇଛି ।

ଉତ୍କଳ ଜନନୀର ବରପୁତ୍ର ଭାବେ ଭାରତ ପକ୍ଷରେ ତୁମେ ଏକ ଅର୍ଦ୍ଧି ଖାପ୍ ରତ୍ନ । କର୍ମମୟ ରାଜନୈତିକ ଜୀବନ ମଧ୍ୟରେ ତୁମର ସାରସ୍ୱତ ସୃଷ୍ଟି ଅନବଦ୍ୟ । ଚନ୍ଦ୍ରଧରୁ ପ୍ରତିଭା, ଟାଉଟର, ଅବ୍ୟାପାର, ଛାୟା ପଥର ଯାତ୍ରୀ, ବୃଣଚକ୍ଷୁ, ଶେଷ ଅଶ୍ରୁ, ପଲ୍ଲୀ ଅବସାନେ, ଚୂଡ଼ଙ୍ଗଦେବ, ଜୀବନ ସମସ୍ୟା, ଓଡ଼ିଶା ଇତିହାସ **History of Orissa, Beginning of the End,** ନୂତନ ଧର୍ମ, ଆତ୍ମବାଦ, ଯୁଗ ସଂକେତ, ଗାନ୍ଧିଜୀ ଓ ଓଡ଼ିଶା, ସାଧନାର ପଥେ, ଗାଁ ମଜଲିସ, ଚମ୍ପୁ ପର୍ବ ଓ ୧୯୭୫ ଅନ୍ୟତମ । ଅଧୁନା ନାନା ଝଡ଼ଝଞ୍ଜା ମଧ୍ୟରେ ଓଡ଼ିଆ ଜାତିର ଦୈନନ୍ଦିନ ଜୀବନ ପ୍ରଣାଳୀ ଓ ଘଟଣାବଳୀକୁ ଏକ ନିପୁଣ ଚିତ୍ରକାର ଭାବରେ ତୁମେ ଯେଉଁଭଳି ଭାବରେ ଆଙ୍କି ଯାଇଛ, ତୁମର ନିତିଦିନିଆ ଜୀବନ-ଚିତ୍ର ମଧ୍ୟରେ ତାହା ସର୍ବଥା ଓ ସର୍ବକାଳ ସ୍ୱାଗତଯୋଗ୍ୟ ।

ଇତିହାସ ରଚନା କରିବା ଓ ଜୀବନର କର୍ମମାର୍ଗ ଜରିଆରେ ନିଜକୁ ଇତିହାସର ନାୟକ କରି ଗଢିବା ଏଇ ଉଭୟ ଶକ୍ତିର ସମନ୍ୱୟ ଖୁବ୍ କମ୍ ବ୍ୟକ୍ତିଙ୍କଠାରେ ଦେଖାଯାଇଥାଏ । ଜାତି ଗଠନ ପର୍ଯ୍ୟାୟରେ ରାଜଧାନୀର କୋଠାବାଡ଼ି ଓ ହୀରାକୁଦ ବନ୍ଧ ନିର୍ମାଣ ତୁମ କୃତିତ୍ୱର ଅନ୍ୟ ଏକ ଦୃଷ୍ଟାନ୍ତ । ଓଡ଼ିଶାର ସାମାଜିକ; ସାଂସ୍କୃତିକ, ରାଜନୈତିକ ଜୀବନର ପ୍ରାଣକେନ୍ଦ୍ର । ହେ ମହତାବ ! ତୁମକୁ କଳ୍ପନା କରିବା ଏକ ଧୃଷ୍ଟତା ମାତ୍ର ।

ଜଣେ ସଂସ୍କାରକ ଭାବରେ ତୁମେହିଁ ପ୍ରଥମେ ହରିଜନମାନଙ୍କୁ ପ୍ରବେଶ କରାଇଛ ପୁରୀ ମନ୍ଦିରରେ । ତୁମର ଏ ଉଦ୍ୟମ ପରେ ପରେ; ସାକ୍ଷୀଗୋପାଳ, ଗୋପୀନାଥ ମନ୍ଦିର; ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଯାଜପୁରର ବିରଜା ମନ୍ଦିର, ସରଣକୂଳର ଲଡ଼ୁବାବା ଆଦି ପ୍ରସିଦ୍ଧ ମନ୍ଦିରମାନଙ୍କରେ ହରିଜନମାନେ ସହଜରେ ପ୍ରବେଶ କରିଥିଲେ ।

ତୁମେ ଯେ ଜାତିଭେଦ ବର୍ଣ୍ଣଭେଦ ଆଦି ବିଭିନ୍ନ ସାମାଜିକ କୁ ପ୍ରଥାର ଊର୍ଦ୍ଧ୍ୱରେ ଥିଲ, ଏହା ସହଜରେ ଅନୁମେୟ ।

ହେ ଶତାବ୍ଦୀର ସୂର୍ଯ୍ୟ, ତୁମକୁ ଶତାବ୍ଦୀର ପିତା କହିଲେ ତୁମ ପ୍ରତି ଠିକ୍ ଶ୍ରଦ୍ଧା ହେବ । ଏ ଜାତି ଏ ଦେଶ ତୁମ ପ୍ରତି କୃତଜ୍ଞ ରହିବ । ଯୁଗ ଯୁଗ ଧରି ତୁମର ଆଲୋକ ଏ ଜାତିକୁ ପଥ ପ୍ରଦର୍ଶନ କରୁ । ହେ ଯୁଗ ପୁରୁଷ ! ତୁମକୁ ମୋର ସୂର୍ଯ୍ୟ ନମସ୍କାର ।



# ଦୂର ପର୍ବତ

## ଶ୍ରୀ ଅଖିଳ କୁମାର ତ୍ରିପାଠୀ

ଚଳିତ ଶତାବ୍ଦୀର ସର୍ବାଧିକ ଜନପ୍ରିୟ ଓଡ଼ିଆ ମହାତ୍ମାଙ୍କ କର୍ମବହୁଳ ଜୀବନୀ ଆଜ ଇତିହାସ ଓ କିମ୍ବଦନ୍ତୀ ରୂପେ ପ୍ରତି ଓଡ଼ିଆ ଗୃହରେ ଆଲୋଚିତ । ବାଲ୍ୟାବସ୍ଥାରେ ଗୁରୁଜନଙ୍କ ମୁଖରୁ ଏଭଳି ବହୁ ସତ୍ୟ ଓ କାଳ୍ପନିକ କାହାଣୀ ଶୁଣି ମୋ ଭଳି ପଶ୍ଚିମ ଓଡ଼ିଶାର କେଉଁ ଦୂରବର୍ତ୍ତୀ ଅଖ୍ୟାତ ଗ୍ରାମ୍ୟ ବାଳକର ମାନସ-ଚକ୍ଷୁରେ ସେ ଏକ ଆକର୍ଷଣୀୟ ଶୋଭାବନ ପର୍ବତ ଦୃଶ୍ୟମାନ ହେବା ସ୍ୱାଭାବିକ । ତାଙ୍କ ଦର୍ଶନ ଓ ଅଧ୍ୟୟନ ପରେ ମଧ୍ୟ ଏବେ ମୁଁ ଅନୁଭବ କରୁଛି ଯେ, ମୋର ସେ ବାଲ୍ୟଧାରଣା ସମ୍ପୂର୍ଣ୍ଣ ଅମୂଳକ ନୁହେଁ । ପ୍ରକୃତରେ, ସେହି ଶୋଭାବନ୍ତ ପର୍ବତର ସମୀପବର୍ତ୍ତୀ ହେବା ଓ ପ୍ରକୃତିର ଭୌଗୋଳିକ ତଥା ବୈଜ୍ଞାନିକ ବିଶ୍ଳେଷଣ କରିବା ମୋ ପକ୍ଷେ ଅଧିକ କଷ୍ଟସାଧ୍ୟ ।

ମୋର ଠିକ୍ ମନେଅଛି, ୧୯୭୮ ମସିହା ଏପ୍ରିଲ ୧୦ ତାରିଖ ଅପରାହ୍ଣରେ ଅଳ୍ପସମୟ ପାଇଁ ଏହି ଇତିହାସ ତଥା ଲୋକକଥା'ର ଜୀବନ୍ତ ନାୟକଙ୍କୁ ପ୍ରଜାତନ୍ତ୍ର କାର୍ଯ୍ୟାଳୟରେ କେବଳ ସମ୍ୟକ୍ ଦର୍ଶନ ଲକ୍ଷ୍ୟରେ ସାକ୍ଷାତ କରିଥିଲି । ତାଙ୍କର ରାଜକୀୟ ରୂପ, କେଶରୀସାହସ-ଦୃପ୍ତ-ଉନ୍ନତ-ବକ୍ଷ, ବୁଦ୍ଧିଦୀପ୍ତ ଚକ୍ଷୁ, ସ୍ମିତହାସଯୁକ୍ତ ପ୍ରସନ୍ନ ବଦନ, ମନେ ପକାଇ ଦେଲା ବାଲ୍ମୀକିଙ୍କ ରାମାୟଣ-ବର୍ଣ୍ଣିତ ରାମଙ୍କ ରୂପ ଶୋଭା :

> 'ସମୁଦ୍ରମିବ ଗାମ୍ଭୀର୍ଯ୍ୟେ
> ଧୈର୍ଯ୍ୟେଣ ହିମବାନମିବଃ
> ବିଷ୍ଣୁନାଂ ସଦୃଶୋ ବୀର୍ଯ୍ୟେଃ
> ସୋମବତ୍ ପ୍ରିୟଦର୍ଶନଃ' ।

ଏକଦା ଏ ଜାତିର ଭାଗ୍ୟ ନିୟନ୍ତ୍ରଣ କରିଥିବା ଏ ମହାନ ବ୍ୟକ୍ତିଙ୍କ ପରିଧେୟ, ବ୍ୟବହାର ଓ ଆଳାପ ଏତେ ସାଧାରଣ, ଭଦ୍ର ଓ ଆତ୍ମୀୟତାପୂର୍ଣ୍ଣ ହୋଇପାରେ, ତାହା କଳ୍ପନା କରି ପାରିଲି ନାହିଁ । ବିଦାୟ ବେଳେ ଗୁରୁଜନଙ୍କ ପାଖରେ ଅଳି କଲାଭଳି ଅଟୋଗ୍ରାଫ ବହିଟି ତାଙ୍କ ହାତକୁ ବଢ଼ାଇ ଦେଇ ତାଙ୍କର ସ୍ୱାକ୍ଷର ଚାହିଁଥିଲି । ସେ ବିନା ଦ୍ୱିଧାରେ, ଅଧିକନ୍ତୁ ଆଶୀର୍ବାଦ ସହ, ସ୍ୱାକ୍ଷର କରିଥିଲେ । ଏଭଳି ପରିଚିତ, ଅପରିଚିତ, ଜୀବିକା ଓ ବୟସ ନିର୍ବିଶେଷରେ ମନସ୍କ ଅଭିଳାଷୀ ସହ ସାକ୍ଷାତ, ଆଳାପ ଓ ପତ୍ର ବିନିମୟ କରିବାକୁ ସେ ଦ୍ୱିଧାବୋଧ କରନ୍ତି ନାହିଁ । ନିୟମିତ ପତ୍ରିକାଦି ପଠନ ଓ ଅସାଧାରଣ ସ୍ମରଣଶକ୍ତି ଯୋଗୁ ସେ ପୁରପଲ୍ଲୀଠୁ ଆରମ୍ଭ କରି ସମଗ୍ର ରାଜ୍ୟର ସଜ ସମ୍ବାଦ ପାଇଥାନ୍ତି । ସତେକି ସେ ଏକ "ଚଳନ୍ତା ସଜ ସମ୍ବାଦ ପତ୍ର ।"

ଅନେକ କହନ୍ତି, ଓଡ଼ିଶା ରାଜନୀତି କେନ୍ଦ୍ରୀଭୂତ ହୋଇଛି ମହତାବଙ୍କ ଠାରେ । ରାଜନୀତିରେ ତାଙ୍କ ସ୍ଥାନ ନିରୂପଣ କରିବା ଭବିଷ୍ୟତର ଐତିହାସିକଙ୍କ କର୍ତ୍ତବ୍ୟ ହୋଇଥିବା ଦୃଷ୍ଟିରୁ ମୋ ଭଳି ଜଣେ ସାଧାରଣ ବ୍ୟକ୍ତି ପକ୍ଷେ ନିରବତାହିଁ ଶ୍ରେୟ । ମୋ ଜାଣିବାରେ ତାଙ୍କୁ ରାଜନୀତିଜ୍ଞ ଅପେକ୍ଷା ଅଧିକ ରାଷ୍ଟ୍ରନୀତିଜ୍ଞ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇପାରେ । କାରଣ, ତାଙ୍କ ରାଜନୀତି ଋଣାତ୍ମକ ନୁହେଁ, ପୁଣି ତହିଁରେ କ୍ଷମତା ଲାଳସା ନାହିଁ । ଅର୍ଦ୍ଧଶତାବ୍ଦୀ ବ୍ୟାପୀ ସେ ଓଡ଼ିଶା ରାଜନୀତିକୁ ନିୟନ୍ତ୍ରଣ କରୁଥିଲେ ମଧ୍ୟ ସ୍ୱଳ୍ପ ସମୟ କ୍ଷମତାରେ ରହି, ଅବଶିଷ୍ଟ ସମୟ ସମାଜ ସେବାରେ କଟାଇଛନ୍ତି । ରାଷ୍ଟ୍ରୀୟ କ୍ଷେତ୍ରରେ ତାଙ୍କର ଚାଣକ୍ୟଙ୍କ ପରି ବୁଦ୍ଧିମତ୍ତା, ଦୂରଦର୍ଶିତା ଓ ନିଃସ୍ୱାର୍ଥପରତା ନିପ୍ସ ତଥା ରାଜାଜୀଙ୍କ ଭଳି ବିଶ୍ୱବିଖ୍ୟାତ ରାଷ୍ଟ୍ରନୀତିଜ୍ଞଙ୍କ ଦ୍ୱାରା ପ୍ରଶଂସିତ ହୋଇଛି ।

ଶାନ୍ତିକାମୀ ଭାରତୀୟ ପକ୍ଷେ ବିପ୍ଳବର ଅର୍ଥ ହେଉଛି, ଦଳିତ ଅନ୍ୟାୟ ବିରୁଦ୍ଧରେ ସ୍ୱରଉତ୍ତୋଳନ ବା ନ୍ୟାୟୋଚିତ କ୍ରୋଧ ପ୍ରକାଶ କରିବା । ଚିର ବିପ୍ଳବୀ ମହତାବଙ୍କୁ ଏଥିପାଇଁ ଅବଶ୍ୟ କମ୍ ମୂଲ୍ୟ ଦେବାକୁ ପଡ଼ିନାହିଁ । ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ସେ

ବେଜଲଗେଟ୍ ହତ୍ୟା ମାମଲାରେ ଜଡ଼ିତ ହୋଇ ମୃତ୍ୟୁଦଣ୍ଡରୁ ଅଳ୍ପକେ ରକ୍ଷା ପାଇଛନ୍ତି । ବର୍ଷ ବର୍ଷ ଧରି କାରାଗାରରେ ଶାରୀରିକ ଓ ମାନସିକ ଯାତନା ଭୋଗିଛନ୍ତି । ଦେଶ ସ୍ୱାଧୀନ ହୋଇଛି, କେତେକ ସଂଗ୍ରାମୀ ଲଜ୍ଜାହୀନ ଭାବେ ଅସତ୍ ଉପାୟରେ ଧନ ଆହରଣରେ ଲିପ୍ତ ହୋଇ-ଛନ୍ତି । କେତେକ ସଂଗ୍ରାମୀ ସ୍ୱାର୍ଥପାଇଁ ଅନ୍ୟାୟକୁ ପ୍ରଶ୍ରୟ ଦେଇ ଦେଶର କ୍ଷତି ସାଧନ କରିଛନ୍ତି । କିନ୍ତୁ ମହତାବଙ୍କ ସେବା ଆଦର୍ଶରୁ ବିଚ୍ୟୁତି ଘଟିନାହିଁ । ଗଣତନ୍ତ୍ରର ସଚର୍କ ପ୍ରହରୀ ମହତାବ ଆପଦକାଳୀନ ମାତ୍ରାଧିକ୍ୟର ପ୍ରତିବାଦ କରି ସ୍ୱାଧୀନ ଭାରତର ସରକାରଙ୍କ ଦ୍ୱାରା ପୁଣି ଜେଲରେ ପଡ଼ିଛନ୍ତି । ନିଜ ରକ୍ତ ଦେଇ ଗଢ଼ିଥିବା ଦେଶ ଓ ଜାତିର ଶାସନକୁ ଜାବୁଡ଼ି ଧରିଥିବା ଶାସନର ବିଶ୍ୱାସଘାତକତା ଦେଖି ସେ ତାଙ୍କର ପରିଣତ ବୟସରେ ମସ୍ତିଷ୍କର ଭାରସାମ୍ୟ ହରାଇ ନାହାନ୍ତି । ଜେଲ ଭିତରେ ଥାଇ ଅତ୍ୟାଚରିତ ଜନତାଙ୍କ ମନୋବଳ ଦୃଢ଼ୀକରଣ ସକାଶେ ଶୁଣାଇଛନ୍ତି—'ଭୂଖାସ୍ୱ ପର୍ବ'ର ବାର୍ତ୍ତା, ଓ '୧୯୭୫'ରେ ସ୍ୱପ୍ନଭଙ୍ଗର କାହାଣୀ ।

ନିଜକୁ ସୁଖରେ ରଖି ଅନ୍ୟକୁ ତ୍ୟାଗର ବାଣୀ ଶୁଣାଉଥିବା ଶନ୍ୟତାରକିତ ଜନତାଙ୍କ ପଞ୍ଚତାରକିତ ନେତାଙ୍କୁ ଲକ୍ଷ୍ୟ କରି କହନ୍ତି—

'ଲଙ୍କାଗଡ଼କୁ ଭାଙ୍ଗିବେ ଏ ବୁଭୁକ୍ଷୁ ଜନତା ଆଜ ନ ହେଲେ କାଲି ।"

ଆଶାବାଦୀ ଗୀତାପୁରୁଷ ମହତାବ ପୁଣି ଆମକୁ ଶୁଣାଉଛନ୍ତି :

"ଏ ଜାତି ମରିନାହିଁ, କି ମରିବ ନାହିଁ, ଏ ବଞ୍ଚିଛି ଏବଂ ବଞ୍ଚିବ । ଭୂଖାସ୍ୱ ପର୍ବ ଶୀଘ୍ର ଶେଷ ପାଇବ ।"

ଅସାଧୁ ବ୍ୟବସାୟୀ, ଦୁର୍ନୀତିଗ୍ରସ୍ତ ଅଫିସର ଓ ନୀତିହୀନ ନେତାଙ୍କ ମହାମେଣ୍ଟ ଯୋଗୁ କଳୁଷିତ ଆମ ଜାତୀୟ ଜୀବନର ସଂସ୍କାରକୁ ଆଖି ଆଗରେ ରଖି ସେ କହିଛନ୍ତି :

"ଏହି ୨୫ ବର୍ଷରେ ସଜଡ଼ା ହୋଇଥିବା ବଗିଚାର ଘାସ, ପାଣି ନ ପାଇ ସୁନ୍ଦର ଫଳଗଛ ଗୁଡ଼ିକ ଝାଉଁଳି ପଡ଼ିଲଣି । ପୁଣି ଏହି ବଗିଚାକୁ ସଫାକରି ପାଣି ଦେଇ ସଜାଡ଼ିବାକୁ ପଡ଼ିବ ।"

ଓଡ଼ିଶାରେ ଶାସନ ଗାଦିରେ ବସିଥିବା ଅଧିକାଂଶ ମୁଖ୍ୟମନ୍ତ୍ରୀ ଓ ଶାସକ ତାଙ୍କର ଶିଷ୍ୟ ହେଲେ ହେଁ ସେମାନଙ୍କର ଅନ୍ୟାୟ ବା ଦୁର୍ବଳତାର ସମାଲୋଚନା କରିବାକୁ ସେ ଘୁଞ୍ଚ ନାହାନ୍ତି ।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରକୁ ମହାତାବଙ୍କ ଦାନ ଅସୀମ । ଏହି ଆବାଲ୍ୟ ସମାଜସେବୀଙ୍କ ଲେଖନୀ ନିଃସୃତ ଉପାଦେୟ ସେବାସଂସ୍କାରଧର୍ମୀ ପ୍ରାୟ ୨୦ଟି ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ଏକାଙ୍କିକା ସଂକଳନ ତାଙ୍କର ସାହିତ୍ୟ ଦକ୍ଷତା ସୂଚାଇଦିଏ । ତାଙ୍କ ଦ୍ୱାରା ଲିଖିତ ଏ ଜାତିର ଧାରାବାହିକ ସାମାଜିକ ଇତିହାସ 'ଗାଁ ମଜଲିସ୍' ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇ ଆସୁଅଛି । ନୂତନ ସାହିତ୍ୟିକମାନଙ୍କ ଉତ୍ସାହଦାତା ଭାବେ ସେ ବେଶ୍ ପରିଚିତ । ଆଜିର ପ୍ରାୟ ସମସ୍ତ ଲବ୍ଧପ୍ରତିଷ୍ଠ ଓଡ଼ିଆ ସାହିତ୍ୟିକଙ୍କ ପ୍ରାଥମିକ କ୍ଷେତ୍ର ହେଉଛି, ମହତାବଙ୍କ ରବିବାସରୀୟ ପ୍ରଜାତନ୍ତ୍ର, ମୀନାବଜାର, 'ଝଙ୍କାର' ଓ ବିଷୁବ ମିଳନ ।

ବାସ୍ତବବାଦୀ ଭାରତୀୟ ଚିନ୍ତାଧାରାର ପରିପୋଷକତା, ପ୍ରାସଙ୍ଗିକତା, ନିତ୍ୟକର୍ମ ମୁଖରତା ଦ୍ୱିଧାହୀନ ଭାବେ ନ୍ୟାୟ କଥନ ଓ ସମଧିକ ବ୍ୟବହାର କୁଶଳତା ତାଙ୍କ ବ୍ୟକ୍ତିତ୍ୱର ଏକ ଏକ ଅଳଙ୍କାର ତୁଲ୍ୟ । ସେ ଆଜି ସର୍ବମାନ୍ୟ ବ୍ୟକ୍ତିତ୍ୱ । ଓଡ଼ିଆଜାତିର ଗଭୀର ଆସ୍ଥା ତାଙ୍କ ଉପରେ । ଏଣୁ ସିନା ଏ ଜାତିର ସୁଖଦୁଃଖରେ ଜନତା ଅପେକ୍ଷା କରେ ତାଙ୍କ ମତାମତ ଓ ନିର୍ଦ୍ଦେଶନାକୁ !



# ଡକ୍ଟର ମହତାବ ଓ ଓଡ଼ିଶା :

ଶ୍ରୀ ଅଘୋର କୁମାର ଦାସ

ଓଡ଼ିଶା ଗୌରବର ସ୍ୱାକ୍ଷର ବହନ କରୁଥିବା ମନିଷୀମାନଙ୍କ ମଧ୍ୟରେ ଡଃ ହରେକୃଷ୍ଣ ମହତାବ ଯେ ଏକ ସ୍ୱତନ୍ତ୍ର ଆସନ ଅଧିକାର କରି ପାରିଛନ୍ତି—ଏହା ସର୍ବଜନ-ସ୍ୱୀକୃତ । ଦୀର୍ଘ ୭୭ ବର୍ଷ ହେବ ଓଡ଼ିଶାର ରାଜନୀତି, ସାଂସ୍କୃତିକ ତଥା ସାମାଜିକ ଜୀବନ ସହ ସେ ସମ୍ପୂର୍ଣ୍ଣ ରୂପେ ସଂଶ୍ଳିଷ୍ଟ । ସେ ଉତ୍ତର ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଅଧିବାସୀ ହୋଇଥିଲେ ହେଁ ସମଗ୍ର ଓଡ଼ିଶାର ଜନମାନସରେ ସେ ଏକ ବିସ୍ମୟକର ତଥା ସଫଳ ବ୍ୟକ୍ତିତ୍ୱର ଅଧିକାରୀ – ଏହା ନିଃସନ୍ଦେହରେ କୁହାଯାଇପାରେ । ଓଡ଼ିଶାର ପ୍ରତ୍ୟେକ ଗଳିକନ୍ଦିରେ ସେ ମହତାବ ବାବୁ ନାମରେ ପରିଚିତ ।

ଏହି ଯୋଗଜନ୍ମା ଓଡ଼ିଶାର ବରପୁତ୍ର ୧୮୯୮ ମସିହା ନଭେମ୍ବର ୨୧ ତାରିଖ ଦିନ ବାଲେଶ୍ୱରର ଅଗରପଡ଼ା ନାମକ ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଶା ପ୍ରତି ତାଙ୍କର ଅବଦାନ ଅବିସ୍ମରଣୀୟ । ବ୍ରିଟିଶମାନଙ୍କ କବଳରୁ ଏ ଦେଶକୁ ସ୍ୱାଧୀନ କରିବା ପାଇଁ ମହାତ୍ମା ଗାନ୍ଧିଙ୍କ ଡାକରାରେ ଉଦ୍‌ବୁଦ୍ଧ ହୋଇ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ, ଭାରତ-ଛାଡ଼ ଆନ୍ଦୋଳନ ତଥା ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ପରେ ଭାରତକୁ ରାଜନୈତିକ କ୍ଷମତା ହସ୍ତାନ୍ତର କରିବା ପାଇଁ ବ୍ରିଟିଶ ନେତାମାନଙ୍କ ସହ ଆଲୋଚନା, ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ଓ ଗଡ଼ଜାତ ମିଶ୍ରଣ ଭଳି ବଳିଷ୍ଠ କାର୍ଯ୍ୟରେ ସେ ସେନାପତି ଭୂମିକାରେ ଅବତୀର୍ଣ୍ଣ ହୋଇ ଦାୟିତ୍ୱ ସୁଚାରୁରୂପେ ତୁଲାଇ ପାରିଥିଲେ । ସ୍ୱାଧୀନତା ହାସଲ ପରେ ଗଡ଼ଜାତ ମିଶ୍ରଣ ଏକାନ୍ତ ଦରକାରୀ ହୋଇ ପଡ଼ିଥିଲା ତଥା ଏହା ନ ହୋଇଥିଲେ ଭାରତର ମାନଚିତ୍ର ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଥାନ୍ତା । ସେ ଯାହା ହେଉ, ସେତେବେଳକାର କେନ୍ଦ୍ରର ସ୍ୱରାଷ୍ଟ୍ରମନ୍ତ୍ରୀ

ରେଭେନ୍ସା କଲେଜ ହଲ୍‌ରେ ୧୯୪୭ ବିଧାନସଭା ବୈଠକରେ
ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ



ଏଡ୍‌ୱିନା ମାଉଣ୍ଟବେଟେନ ଓ କନ୍ୟା ପାମେଲାଙ୍କ ସହିତ
ଡକ୍ଟର ମହତାବ

ଲୌହମାନଙ୍କ ବାଲ୍ଲଭଭାଇ ପଟେଲ୍ ତଥା ଡକ୍ଟର ମହତାବଙ୍କର ଉନ୍ନତ ଚିନ୍ତାଧାରା ଫଳରେ ଗଡ଼ଜାତ ମିଶ୍ରଣ ସମ୍ଭବ ହୋଇ ପାରିଥିଲା । ଏହି କାର୍ଯ୍ୟ ଡଃ ମହତାବଙ୍କ ଦ୍ୱାରା ହିଁ ପ୍ରଥମେ ଓଡ଼ିଶାରୁ ଆରମ୍ଭ ହୋଇଥିଲା ଏବଂ ୧୯୪୮ ମସିହା ଜାନୁୟାରୀ ପହିଲାରେ ସେ ଏହି ଚୁକ୍ତି-ନାମାରେ ସ୍ୱାକ୍ଷର କରିଥିଲେ ।

ସମ୍ବଲପୁରର ହୀରାକୁଦ ଠାରେ ଜଳଭଣ୍ଡାର ନିର୍ମାଣ କରିବା, ମାଛକୁଣ୍ଡ ବିଦ୍ୟୁତ୍ ଉତ୍ପାଦନ ଯୋଜନା, ଭୁବନେଶ୍ୱରରେ ରାଜଧାନୀ ସ୍ଥାପନ ନିମନ୍ତେ ସେ ଓଡ଼ିଶାବାସୀଙ୍କର ଚିର ସ୍ମରଣୀୟ ହୋଇ ରହିଛନ୍ତି । ଏଗୁଡ଼ିକ ଓଡ଼ିଶାର ଗୌରବ ରୂପେ ଏବେ ବି ଦୀପ୍ତିମନ୍ତ ।

ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ତାଙ୍କର ଦାନ ମଧ୍ୟ ଅବିସ୍ମରଣୀୟ । 'ପ୍ରତିଭା', ଟାଉଟର, ଶେଷ ଅଶ୍ରୁ, 'ଘରଚକ୍ଷୁ', ଚୁମ୍ବାପଥର ଯାତ୍ରୀ, ଅବ୍ୟାପାର, 'ପଲାସୀ ଅବସାନେ', ଚୋଡ଼ଗଙ୍ଗ ଦେବ ଇତ୍ୟାଦି ରଚନା କରି ଓଡ଼ିଆ ସାହିତ୍ୟ ତଥା ଇତିହାସର 'ଶ୍ରୀ' ମଣ୍ଡନ କରିଅଛନ୍ତି । "ଗାଁ ମଜଲିସ୍" ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇ ଓଡ଼ିଶାର ଗୌରବ ବୃଦ୍ଧି କରିଛନ୍ତି । ତାଙ୍କ ରଚିତ "ଓଡ଼ିଶା ଇତିହାସ" (the History of Orissa) "Beginning of the End" ଓଡ଼ିଶାର ଇତିହାସ କ୍ଷେତ୍ରରେ ଏକ ସାରସ୍ୱତ ଝଙ୍କାର, ଏହା ନିର୍ବିଘ୍ନରେ କୁହାଯାଇପାରେ ।

ଡଃ ମହତାବଙ୍କର ସାମାଜିକ ଜୀବନକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ—କଟକରୁ ପ୍ରକାଶିତ ଦୈନିକ 'ପ୍ରଜାତନ୍ତ୍ର', ମାସିକ ସାହିତ୍ୟ ପତ୍ରିକା 'ଝଙ୍କାର', ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ 'ମୀନାବଜାର'; ସମ୍ବଲପୁରରୁ ପ୍ରକାଶିତ ଦୈନିକ 'ହୀରାଖଣ୍ଡ'ର ପ୍ରତିଷ୍ଠାତା ରୂପେ ଓଡ଼ିଶାର ସାମାଜିକ ଜୀବନରେ ଏକ ଅମ୍ଳାନ ପ୍ରତିଭାର ସ୍ୱାକ୍ଷର ବହନ କରିଛନ୍ତି । ଏତଦ୍‌ବ୍ୟତୀତ 'ପ୍ରଜାତନ୍ତ୍ର' ପ୍ରଚାର ସମିତି ଆନୁକୂଲ୍ୟରେ 'ବିଷୁବ ମିଳନ' ବର୍ଷକେ ଥରେ ସମସ୍ତ ସାହିତ୍ୟିକ, କବି, ସାହିତ୍ୟ-ପ୍ରେମୀଙ୍କୁ ଏକତ୍ର କରି ପାରିବା ତାଙ୍କର ଅନ୍ୟତମ ଅନବଦ୍ୟ କୃତି ।

ଏହି ଯୋଗଜନ୍ମା ମହତାବଙ୍କ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ଏହା ଏକ ବିରାଟ ଗ୍ରନ୍ଥ ହେବ । ସେ ଓଡ଼ିଶା ରାଜ୍ୟର ସାମାଜିକ, ସାଂସ୍କୃତିକ, ରାଜନୈତିକ ଜୀବନର ପ୍ରଜ୍ୱଳିତ ଦୀପ ସଦୃଶ । ସେ ଆମ୍ଭମାନଙ୍କର ପ୍ରେରଣାର ଉତ୍ସ ତଥା ଭବିଷ୍ୟତ ଜୀବନର ପଥ-ପ୍ରଦର୍ଶକ । ଓଡ଼ିଶାର ଏହି ବର୍ଷୀୟାନ୍ ତଥା ଉଦାସୀନ ପୁରୁଷ ଡଃ ମହତାବଙ୍କୁ କଳନା କରିବା ଏକ ଦୁଃସାଧ୍ୟ ପ୍ରଚେଷ୍ଟା ମାତ୍ର କହିଲେ ଅତ୍ୟୁକ୍ତି ହେବନାହିଁ ।

ପରିଶେଷରେ ଆଜିର ୮୭ତମ ଜୟନ୍ତୀର ଶୁଭ ଅବସରରେ ତାଙ୍କର ଦୀର୍ଘଜୀବନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ତଥା ଓଡ଼ିଶାକୁ ନୂତନ ପଥରେ ଗଢ଼ି ତୋଳିବା ପାଇଁ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବା ଆମ ସମସ୍ତଙ୍କର ଆଜିର ଦିବସରେ କାମ୍ୟ ହେବା ଉଚିତ୍ ।





ଦିଲ୍ଲୀର ପାଲାମ ବିମାନ ବନ୍ଦରରେ ପ୍ରଧାନମନ୍ତ୍ରୀ ନେହେରୁ,
ଉପ-ପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ
ସହିତ ଡଃ ମହତାବ

# ଗୋଟିଏ ବର୍ଷ ପରେ.....

**ଶ୍ରୀ ସଂଗ୍ରାମ କେଶରୀ ମହାପାତ୍ର**
ପୂର୍ବତନ ବିଧାୟକ

ଇତିମଧ୍ୟରେ ଗତାନୁଗତିକ ଭାବରେ ପୁଣି ଗୋଟିଏ ଅତ୍ୟନ୍ତ ମୂଲ୍ୟବାନ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଏହିବର୍ଷଟିକୁ ବିଭିନ୍ନ ରାଜନୈତିକ ଦଳର ନେତୃସ୍ଥାନୀୟ ବ୍ୟକ୍ତିମାନେ ବିଭିନ୍ନ ଭାବରେ ଉପଭୋଗ ଓ ଉପଯୋଗ କରିଛନ୍ତି । କେହି ନିଜର ଓ ନିଜ ଦଳର ସ୍ଥିତିକୁ ବଜାୟ ରଖିବାକୁ ଚେଷ୍ଟିତ ଥିବା ବେଳେ କେହି ନିଜର ଓ ନିଜ ପରିବାର ପରିଜନମାନଙ୍କର ବିପୁଳ ସମ୍ପତ୍ତି ଠୁଳ କରିବାରେ ଆତ୍ମ-ବିଭୋର ହୋଇ ଧର୍ମକୁ ଆଖିଠାର ମାରିବାରେ ବ୍ୟସ୍ତ ଓ ବିବ୍ରତ ହୋଇ ପଡ଼ିଛନ୍ତି । ପୁଣି କେହି ବର୍ତ୍ତମାନ ସର୍ବସ୍ୱ ରାଜନୀତିରେ ନିଜକୁ ସଜାଇ ନେବାରେ ବ୍ୟସ୍ତ ହୋଇଥିଲାବେଳେ ଅନ୍ୟ କେହି ଭବିଷ୍ୟତ ଜୀବନର ସୁଖ ସମ୍ଭୋଗର ଶୋଭନୀୟ ସୌଧ ନିର୍ମାଣ କରିବା ଲାଗି ବିଭିନ୍ନ ସୂତ୍ରରୁ ଉପାଦାନ ସଂଗ୍ରହ କରିବାରେ ବ୍ୟସ୍ତ । ବାଣିଜ୍ୟ ବ୍ୟବସାୟ ଲାଗି ବେନାମୀ ସଂସ୍ଥା ଗଠନ କରି, କ୍ଷମତାର ଅପବ୍ୟବହାର କରି ଦେଶର ଗରିବ ଖଟିଖିଆ ମେହନତି ମଣିଷକୁ କେହି ବା ଭୁଆଁ ବୁଲାଇବାରେ ବ୍ୟସ୍ତ । ମୋଟାମୋଟି ଏହାହିଁ ହେଉଛି ଆମ୍ଭ ଅଥବା ଗୋଷ୍ଠୀକୈନ୍ଦ୍ରିକ କେତେକ ବ୍ୟକ୍ତିବିଶେଷଙ୍କର ଦେଶ ଓ ଜାତି ଲାଗି ଦାନ, ଶାସନ ଓ ରାଜନୀତିକୁ ସେମାନେ ଏହି ଅର୍ଥରେ ଦେଖିଛନ୍ତି ।

ଏହି ପରି-ପ୍ରେକ୍ଷୀରେ ବର୍ଷୀୟାନ ଓ ସର୍ବମାନ୍ୟ ଡଃ ମହତାବଙ୍କ କଥା ବିଚାରକୁ ନିଆଯାଉ । ସେ ଆଜି ରାଜନୈତିକ ମଇଦାନର ଖେଳୱାଡ଼ ନୁହନ୍ତି । ତାଙ୍କର କ୍ରୀଡ଼ା-ନୈପୁଣ୍ୟ ଆଜି ଇତିହାସର କଥା

ବୋଲି ଅନେକେ ସ୍ୱୀକାର କରୁଛନ୍ତି । ପ୍ରତ୍ୟକ୍ଷ ରାଜନୀତିରେ ସେ ନଥିଲେ ମଧ୍ୟ ରାଜନୀତିର ଊର୍ଦ୍ଧ୍ୱରେ ରହିଛନ୍ତି । ତାଙ୍କର କ୍ରୀଡ଼ା ଏବଂ କାର୍ଯ୍ୟ ପରିସର ସ୍ୱକୀୟ ରାଜ୍ୟ ମଧ୍ୟରେ ସୀମିତ ନ ହୋଇ ପରିବ୍ୟାପ୍ତ ହୋଇଛି ସମଗ୍ର ଦେଶକୁ । ତାଙ୍କର କାର୍ଯ୍ୟର ସୀମା ଗତବର୍ଷ ଅପେକ୍ଷା ଚଳିତବର୍ଷ ଆହୁରି ବ୍ୟାପକ ହୋଇଛି । ତାଙ୍କର ଗତି ଓ ପ୍ରଗତିର ପଥ ହୋଇଛି ସୁଦୂର ପ୍ରସାରୀ ଏବଂ ସୁରକ୍ଷିତ ।

ଓଡ଼ିଶା ଏବଂ ଅନ୍ୟାନ୍ୟ ରାଜ୍ୟ ତଥା କେନ୍ଦ୍ରର ଶାସନ କ୍ଷେତ୍ରରେ ଗତ ବର୍ଷ ଦେଖା ଦେଇଥିବା ଯାବତୀୟ ଆକସ୍ମିକ ଘଟଣାବଳୀର ବିଭିନ୍ନ ଦିଗ ଉପରେ ବିଭିନ୍ନ ସମୟରେ ଡଃ ମହତାବ ଅତ୍ୟନ୍ତ ମୂଲ୍ୟବାନ ଲେଖାମାନ ଲେଖି ତାକୁ ତାଙ୍କର ସମ୍ବାଦ ପତ୍ର "ପ୍ରଜାତନ୍ତ୍ର" ମାଧ୍ୟମରେ ଲୋକ-ଲୋଚନକୁ ଆଣିଛନ୍ତି । ସେସବୁ ଘଟଣାବଳୀ ଉପରେ ନିଜର ମତାମତ ଦେବା ସାଙ୍ଗକୁ ଦେଶର ଜନସାଧାରଣ, ଚିନ୍ତାଶୀଳ ବୁଦ୍ଧିଜୀବୀ, ରାଜନୈତିକ ନେତୃବୃନ୍ଦଙ୍କ ମତାମତ ଲାଗି ସେ ପଥ ପରିଷ୍କାର କରି ଦେଇଛନ୍ତି । 'ଗାଁ ମଜଲିସ' ଏବଂ ସମ୍ପାଦକୀୟରେ ବହୁ ମୂଲ୍ୟବାନ ଲେଖାମାନ ଲେଖି ସେ ବିଶେଷକରି ରାଜ୍ୟର ସାମୂହିକ ଉନ୍ନତି ଲାଗି ଚେଷ୍ଟିତ ହୋଇଛନ୍ତି । 'ପ୍ରଜାତନ୍ତ୍ର' ପରିସର ମଧ୍ୟରୁ ପ୍ରକାଶିତ ହେଉଥିବା ଇଂରାଜୀ ଦୈନିକ ଇଷ୍ଟର୍ଣ୍ଣଟାଇମସ୍‌କୁ ପୁନଃ ପ୍ରକାଶ କରି ରାଜ୍ୟ ଓ ରାଜ୍ୟ ବାହାରେ ଓଡ଼ିଶାର ଭାବମୂର୍ତ୍ତି, ରାଜନୈତିକ ପରିସ୍ଥିତି ଆଦିକୁ ବିସ୍ତୃତ ଆଲୋଚନା କରିବାରେ ସକ୍ରିୟ ସହଯୋଗ କରିଥିଲେ । ଏହି କାର୍ଯ୍ୟ ଲାଗି ସେ ସଂଗଠନକୁ ଅଧିକ ମଜବୁତ୍ କରିବା ଲାଗି ପୂର୍ବବର୍ଷମାନଙ୍କ ଅପେକ୍ଷା ଅଧିକ ଶ୍ରମ ସ୍ୱୀକାର କରିବାରେ ଯଶସ୍ୱୀ ହେବାର ଗୌରବ ଅର୍ଜନ କରିଛନ୍ତି ।

ସେହିପରି ଭାବରେ ପ୍ରଜାତନ୍ତ୍ର ପରିସର ମଧ୍ୟରେ ଏକ ସ୍ୱତନ୍ତ୍ର କୋଠରୀରେ ବହୁ ମୂଲ୍ୟ ବ୍ୟୟରେ ଏକ ଅତ୍ୟାଧୁନିକ ଅଫସେଟ ପ୍ରିଣ୍ଟିଂ ମେସିନ ବସାଇ ସେଥିରେ ଦୈନିକ ପ୍ରଜାତନ୍ତ୍ରକୁ ଅଧିକ ଚିତ୍ତାକର୍ଷକ ଭାବରେ ମୁଦ୍ରଣ କରାଇବା କାର୍ଯ୍ୟରେ ଡଃ ମହତାବ ଯଥେଷ୍ଟ ଶ୍ରମ ସ୍ୱୀକାର କରିବା କଥା କାହାରିକୁ ଅବିଦିତ ନାହିଁ । ଯେଉଁମାନେ

ଧାରାବାହିକ ଭାବରେ ଦୈନିକ ପ୍ରଜାତନ୍ତ୍ର ପାଠ କରନ୍ତି ସେମାନେ ନିଶ୍ଚିତ ଭାବରେ ମୋ ସହିତ ଏକମତ ହେବେ ଯେ, ଛପା ସାଙ୍ଗକୁ ସବୁ ଶ୍ରେଣୀର ଲେଖାର ମାନ ବର୍ତ୍ତମାନ ପୂର୍ବାପେକ୍ଷା ଅଧିକ ଉନ୍ନତ । ଏହି କାର୍ଯ୍ୟ ସାଧନ ଲାଗି ପାଣ୍ଡି ସଂଗ୍ରହ, ଯୋଗାଯୋଗ ଆଦି କରିବାରେ ସେ ନିଜକୁ ନିୟୋଜିତ କରିଛନ୍ତି । କାରଣ ସେ ଜାଣନ୍ତି ଏହି ସମସ୍ତ ଶ୍ରମ ସ୍ୱୀକାର ଯଦି ସେ ନିଜେ ନ କରନ୍ତି ତା ହେଲେ ସମସ୍ତ କାର୍ଯ୍ୟ ବିଳମ୍ବିତ ହେବା ସ୍ୱାଭାବିକ । ଭଲ ଲେଖକମାନଙ୍କୁ ଠାବ କରିବା ଏବଂ ସେମାନଙ୍କର ଯୁଗୋପଯୋଗୀ ଲେଖାମାନ 'ପ୍ରଜାତନ୍ତ୍ର' 'ମୀନାବଜାର' ଏବଂ 'ଝଙ୍କାର' ଆଦିରେ ପ୍ରକାଶିତ କରିବା ଉପରେ ସେ ତୀକ୍ଷ୍ଣ ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ସେ ସବୁର ମାନ ଓ ମୂଲ୍ୟ ନିଃସନ୍ଦେହ ଭାବରେ ବୃଦ୍ଧି କରି ପାରିଛନ୍ତି । ବୟସ, ବ୍ୟାଧି, ବାଧା ଏ ସମସ୍ତ ତାଙ୍କର ପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରି ପାରିନାହିଁ । ଭୁବନେଶ୍ୱର ଏକାମ୍ର ନିବାସ ଠାରୁ ତାଙ୍କର ନାଲିରଙ୍ଗର ମଟର ଗାଡ଼ି ଅଧିକ ଗତିଶୀଳ ଭାବରେ ପ୍ରଜାତନ୍ତ୍ର ପରିସରକୁ ଧାବିତ ହୋଇଛି । ସାମ୍ବାଦିକତା କ୍ଷେତ୍ରରେ ଅଧିକ ପ୍ରଗତି କରିବା, ଲୋକମାନଙ୍କର ସମସ୍ୟା ପ୍ରତି ଯଥାସାଧ୍ୟ ସଚେଷ୍ଟ ରହିବା, ରାଜ୍ୟର ଶାସକବର୍ଗଙ୍କୁ ବିଭିନ୍ନ ସମୟରେ ଦିଗ୍‌ଦର୍ଶନ ଦେବା, ସରକାରୀ ଦୋଷ ଦୁର୍ବଳତାକୁ କେବଳ ଗାଳିଗୁଲଜ ମାଧ୍ୟମରେ ସମାଧାନ କରିବାର ପ୍ରୟାସ ନ କରି ତା'ର ନିରାକରଣ ଲାଗି ଆବଶ୍ୟକୀୟ ଏବଂ ଉପଯୁକ୍ତ ପ୍ରେରଣା ଯୋଗାଇବା ଦିଗରେ ଡଃ ମହତାବ ସ୍ୱକୀୟ ମହନୀୟତା ଓ ଏକନିଷ୍ଠ ସାଧନାର ପରିଚୟ ପ୍ରଦାନ କରିଛନ୍ତି ।

ନିକଟ ଅତୀତରେ 'ପ୍ରଜାତନ୍ତ୍ର' ଓ ଡଃ ମହତାବଙ୍କ କାର୍ଯ୍ୟାବଳୀର କେତେକେ ନିନ୍ଦା କରିବା ଘଟଣା ଲୋକଲୋଚନକୁ ଆସିଛି । ଏହା ଅନେକ ମାତ୍ରାରେ ଅସୂୟା-ପରବଶ ହୋଇ କରାଯାଇଛି । ଧାରାବାହିକ 'ପ୍ରଜାତନ୍ତ୍ର' ପାଠକମାନେ ସରକାର ବିରୋଧୀ ଲେଖାମାନ ସେଥିରେ ନିଶ୍ଚୟ ଦେଖିବାକୁ ପାଇଥିବେ ।

ତାରାପୀଠ ଏବଂ ବୁର୍ଲାଠାରେ ଘଟିଯାଇଥିବା ନାଟକୀୟ ଘଟଣାବଳୀ ସମ୍ପର୍କରେ ଡକ୍ଟର ମହତାବ ତାଙ୍କର ଲେଖନୀ ଚଳାଇ

ଏକ ପକ୍ଷରେ ସରକାରଙ୍କୁ ସତର୍କ କରିଦେବା ସଙ୍ଗେ ସଙ୍ଗେ ଅପର ପକ୍ଷରେ ଜନସାଧାରଣ, ଶ୍ରମଜୀବୀ ଏବଂ ଛାତ୍ରମାନଙ୍କର ନ୍ୟାଯ୍ୟୋଚିତ ଦାବୀ ଇତ୍ୟାଦି ଉପରେ ଆଲୋକପାତ କରିଛନ୍ତି । ରୋକ୍ ଠୋକ ଭାବରେ କେତେକ ଲେଖା ଲେଖି ସେ ବହୁ ସମାଲୋଚନାର ଶରବ୍ୟ ହୋଇଛନ୍ତି; ତଥାପି ତାଙ୍କର ଲେଖନୀ ଚାଲିଛି ଆଗରୁ ଆଗକୁ । ସେନ୍ବପର ପଞ୍ଜାବ ଘଟଣାବଳୀ ଏବଂ ଅକ୍ଟୋବର ୩୧ ତାରିଖରେ ଭାରତର ପ୍ରିୟ ପ୍ରଧାନମନ୍ତ୍ରୀଙ୍କର ଗୁଳି ସ୍ଫୋଟରେ ଆକସ୍ମିକ ବିୟୋଗ ଜନିତ ଦେଖା ଦେଇଥିବା ରାଜନୈତିକ ଓ ସାଂପ୍ରଦାୟିକ ସଙ୍କଟ ଉପରେ ଡଃ ମହତାବଙ୍କ ଲେଖା ଅବିସ୍ମରଣୀୟ ହୋଇ ରହିବ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଡଃ ମହତାବ ଯେପରି କର୍ମଚଞ୍ଚଳ ହୋଇ ଉଠିଛନ୍ତି ତାହା ଯେ କୌଣସି ଯୁବକକୁ ସ୍ୱତଃ ସ୍ତମ୍ଭୀଭୂତ କରିଦିଏ । ଯୁବକ ଯେତେବେଳେ ଶଯ୍ୟାରେ ନିଦ୍ରାଗତ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତାଠାରୁ ବହୁ ଦୂରରେ, ଠିକ୍ ସେତିକିବେଳେ ଜଣେ ବର୍ଷୀୟାନ୍ ସାମ୍ବାଦିକ, ଐତିହାସିକ, ସାହିତ୍ୟିକ ଗବେଷକ, ଔପନ୍ୟାସିକ, ପ୍ରବୀଣ ରାଜନୀତିଜ୍ଞ, ବଳିଷ୍ଠ ସଂଗଠକ ନିଜର ସକଳ ଶକ୍ତି ଖଟାଇ ତାଙ୍କର କାର୍ଯ୍ୟ ପରିସରକୁ ପରିବର୍ଦ୍ଧିତ କରିବା, ସୁଦୂର ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତର ସୁଖ-ସ୍ୱପ୍ନ ଦେଖିବା ବାସ୍ତବିକ କେତେ ବିସ୍ମୟକର ସତେ ?



# ସୁନାଶାମୁକା-ରୂପାଚାମୁଚ

## ଡାକ୍ତର ଗୌରାଙ୍ଗ ଚରଣ ମହାପାତ୍ର

ସେଦିନ ନିଶାର୍ଦ୍ଧରେ ଯେଉଁ ଅପୂର୍ବ ଜ୍ୟୋତିର ଆର୍ବିଭାବ ହେଲା ସେଥି ନବାଲୋକରେ ଅଗରପଡ଼ାର ରାଜବଂଶ ଆନନ୍ଦ ଉଲ୍ଲାସ ମଧ୍ୟରେ ହିଲ୍ଲୋଳିତ ହୋଇ ଉଠିଲା । ରାଜବଂଶର ଭାବୀ ଦାୟାଦ, ନବଜାତର ଆଲୋକରେ ଭରି ଉଠିଲା ଅପୂର୍ବ ଉତ୍ସାହ । ଚେତି ଉଠିଲା ଶୁଭସଙ୍କେତ । କୁଳପୁରୋହିତଙ୍କ ମାଙ୍ଗଳିକ ଧ୍ୱନି ମଧ୍ୟରେ ସୁନାଶାମୁକାରେ ନାଭିଚ୍ଛେଦନ, (ଜାତକର୍ମ) କରାଗଲା । ମଙ୍ଗଳାଷ୍ଟକ ପଢ଼ି ବୃଦ୍ଧ ଜ୍ୟୋତିଷ ଖଡ଼ୀ ଗଡ଼ାଇ ଜାତକ ରଚନା କରି କହିଲେ ଏ ଶୁଭକୁମାର ଅତି ଶୁଭଲଗ୍ନରେ ଭୂମିଷ୍ଠ ହୋଇଛନ୍ତି । ଗ୍ରହସ୍ଫୁଟ ଅଙ୍କନ କରି ଜ୍ୟୋତିଷେ କହିଲେ ଏ କୁଳଚନ୍ଦ୍ରମା ଦିନେ ନା ଦିନେ ରାଜରାଜେଶ୍ୱର ହେବେ । 'ଛତ୍ରପତିଯୋଗ' ଦ୍ୱାରା ମୁକୁଟ ମଣ୍ଡିତ ହୋଇ ଦେଶ ଓ ଜାତିର ମଙ୍ଗଳ କରି ବିଶିଷ୍ଟ ରାଷ୍ଟ୍ରନାୟକ ହେବେ । ରିଷ୍ଟବିଚାର କରି କହିଲେ—ଏ ଅଜାତ ଶତ୍ରୁ ନ ହେଲେ ମଧ୍ୟ ଶତ୍ରୁମାନେ ପରାଜିତ ହୋଇ ଶରଣାପନ୍ନ ହେବେ । ଏହାଛଡ଼ା ଏ ଦୀର୍ଘାୟୁ, ପରୋପକାରୀ, ପ୍ରଜାବତ୍ସଳ, କ୍ଷମାଶୀଳ, ଦୟାଳୁ, ତ୍ୟାଗୀ, କଷ୍ଟସହିଷ୍ଣୁ, ନିଷ୍ଠାବାନ, ନିଃସ୍ୱାର୍ଥପର ଓ ନିରହଙ୍କାର ଗୁଣରେ ଶତ୍ରୁ ମଧ୍ୟ ମିତ୍ର ହେବେ । ଏ ଜାତକରେ ବ୍ୟକ୍ତି କ୍ଷମତାସୀନ ହେଲେ ରାଜଦ୍ରୋହୀ ବା ବିପ୍ଳବୀ ହେବେ ।

### ଘିଅ ଆଉ ପଖାଳ :

ସେଦିନ ଯେଉଁ ଶିଶୁର ସୁନା ଶାମୁକାରେ ନାଡ଼ି କଟା ହୋଇ ରୂପା ଚାମୁଚରେ ଘିଅ ମହୁ ଖାଇ ବଢ଼ିଥିଲେ, ସେ ପୁଣି ଦେଶ ଓ ଜାତି ପାଇଁ ଯେଉଁ କଷ୍ଟ ଭୋଗିଲେ ତାହା ଜାଣିଲେ ସ୍ତମ୍ଭୀଭୂତ ହେବାକୁ ହୁଏ ।

ହରେକୃଷ୍ଣ ଯେତେବେଳେ ଭଦ୍ରକ ହାଇସ୍କୁଲରେ ପଢ଼ିବାକୁ ଆସିଲେ· ସେତେବେଳେ ଭଦ୍ରକ "ମହତାବ କୋଠି"ରେ ତାଙ୍କ ପାଇଁ ଝୁକର ପୂଜାରୀ ଓ ଜଣେ ଗୁମାସ୍ତା ରହିଲେ । ତୁଳସୀ ଦୁଇପଟରୁ ବାସେ । ଅଗରପଡ଼ା ରାଜପରିବାରରେ କେହି ତେଲ ଖାଆନ୍ତି ନାହିଁ, ଘିଅ ଖାଆନ୍ତି । ତଦନୁଯାୟୀ ଭଦ୍ରକ କୋଠିରେ ହରେକୃଷ୍ଣଙ୍କ ପାଇଁ ଡାଲି ତରକାରୀ ଘିଅରେ ପ୍ରସ୍ତୁତ ହୁଏ, ଝୁକର, ପୂଜାରୀ, ଗୁମାସ୍ତାଙ୍କ ପାଇଁ ତେଲରେ ରନ୍ଧାଯାଏ । ହରେକୃଷ୍ଣ ଏହା ଜାଣିପାରି ବାପାଙ୍କୁ ଚିଠି ଲେଖିଲେ "ମୋତେ ଡାକ୍ତର ମନା କରିଛନ୍ତି ମୁଁ ଆଉ ଘିଅ ଖାଇବି ନାହିଁ, ତେଲ ଖାଇବି ।" ଫଳତଃ ହରେକୃଷ୍ଣଙ୍କ ପାଇଁ ସ୍ୱତନ୍ତ୍ର ରନ୍ଧନ ବ୍ୟବସ୍ଥା ପରିବର୍ତ୍ତେ ଏକପ୍ରକାର ବ୍ୟବସ୍ଥା କରାଗଲା । ଝୁକର, ପୂଜାରୀ, ଗୁମାସ୍ତା ସମସ୍ତେ ଚଳିଲେ । ବର୍ଷକ ପରେ ହରେକୃଷ୍ଣ ଦେଖିଲେ ଅନେକ ଛାତ୍ର ଅର୍ଥାଭାବରେ ଘର ପାଠ ପଢ଼ି ପାରୁ ନାହାନ୍ତି । ଅଥଚ ତାଙ୍କ ପାଇଁ ଝୁକର, ପୂଜାରୀ, ଗୁମାସ୍ତା ରଖିବାର ଆବଶ୍ୟକତା ନାହିଁ । ତେଣୁ ସେମାନଙ୍କୁ ଅଗରପଡ଼ା ପଠାଇ ଦେଇ ସେହି ଖର୍ଚ୍ଚରେ ସେ ଗରିବ ଛାତ୍ରଙ୍କର ପାଠପଢ଼ା ଖର୍ଚ୍ଚ ଚଳାଇଲେ ।

ସେତେବେଳେ ଗାଁ ଗହଳରେ ଏତେ ସ୍କୁଲ କଲେଜ ନ ଥିଲା । ହରେକୃଷ୍ଣ ତାଙ୍କ ବାପାଙ୍କୁ କହି ଗୋଟିଏ ମାଇନର ସ୍କୁଲ ଖୋଲିଲେ ଓ ତାଙ୍କ ଇଷ୍ଟଦେବଙ୍କ ମନ୍ଦିରରେ ଯେଉଁ ଭୋଗ ହୁଏ ସେଥିରେ ୨୦ ଜଣ ଗରିବ ଛାତ୍ର ଖାଇ ପାଠ ପଢ଼ିବାର ବ୍ୟବସ୍ଥା କଲେ । × × × ସେ ଭଦ୍ରକରେ ପାଠପଢ଼ା ସାରି ଯେତେବେଳେ ରେଭେନ୍‌ସା କଲେଜରେ ପଢ଼ିଲେ ସେତେବେଳେ ମଧ୍ୟ ଦୁଇଜଣ ସହପାଠୀଙ୍କୁ ସାହାଯ୍ୟ ଦେଇ ପଢ଼ାଉଥିଲେ । ନିଜ ଖର୍ଚ୍ଚ କମାଇ ଅନ୍ୟ ଗରିବ ଛାତ୍ରଙ୍କୁ ସାହାଯ୍ୟ ଦେଉଥିଲେ ।

ଯେଉଁ ହରେକୃଷ୍ଣ ମହତାବ ରୂପା ଝୁମୁରରେ ଘିଅ ମହୁ ଖାଇ ବଢ଼ିଥିଲେ ସେହି ମହତାବ ଭାରତୀୟ ମୁକ୍ତି ସଂଗ୍ରାମରେ ଝାସ ଦେଇ କେତେ ଉପବାସରେ ଯେ ଦିନ କଟାଇଛନ୍ତି ତାହା ବର୍ଣ୍ଣନା କରି ହେବ ନାହିଁ । ଦିନେ ୬କରୁଣାକର ପାଣିଗ୍ରାହୀ ଓ ସେ କଂଗ୍ରେସ ପ୍ରଚାରପାଇଁ ଖୁବ୍ ଦୂର ମଫସଲକୁ ଯାଇଥିଲେ । ଖାଲ, ବିଲ, ନଈ, ନାଳ, ଗୋହିରୀ

ଗୋଦଣ୍ଡା ଡେଇଁ ଫେରୁଥାଆନ୍ତି । ଉଦୁଉଦିଆ ଖରାବେଳ । ମୁଣ୍ଡ ଝାଳ ଚୁଣ୍ଡରେ ମରୁଥାଏ । ଛତା ନାହିଁ । ଜୋତା ନାହିଁ । ଖଦଡ଼ ଚଦରକୁ ମୁଣ୍ଡରେ ପକାଇ ଦୁଇ ସଂଗ୍ରାମୀ ବନ୍ଧୁ ଆସୁ ଆସୁ ଗହ୍ୱର ପାଟ ମଝିରେ ଭୀଷଣ ଶୋଷ ହେଲା । କୂଅ ପୋଖରୀ କିଛି ନାହିଁ । କରିବେ କଅଣ ? ବିଲ ମଝିରେ ଜଣେ ହଳିଆ ହଳ କରୁଥାଏ । ତା' ପାଖରେ ପାଣିଥିବ ଭାବି ଗଲେ ହଳିଆ ପାଖକୁ । ପାଣି ନ ଥିଲା । ଟିକିଏ ତୋରାଣି ଥିଲା । ଦୁଇବନ୍ଧୁ ସେହି ତୋରାଣିରୁ ଢୋକେ ଢୋକେ ପିଇ ଜୀବନ ବଞ୍ଚାଇଲେ ଏବଂ ଗଲାବେଳେ ହଳିଆକୁ ଦୁଇ ପଇସା ଦେଇଗଲେ ।

## ଶତ୍ରୁ-ମିତ୍ର :

ଲୋକପ୍ରିୟତାର ପ୍ରକୃତ ପରିଚୟ ହେଉଛି—ଶତ୍ରୁ ମୁହଁରେ ପ୍ରଶଂସା । ମହତାବଙ୍କ ଜୀବନୀ ପର୍ଯ୍ୟାଲୋଚନା କଲେ ଜଣାଯାଏ ତାଙ୍କର ରାଜନୈତିକ ଶତ୍ରୁ ଅନେକ ଥିଲେ । ମାତ୍ର ଅବଶେଷରେ ଶତ୍ରୁମାନେ ପୁଣି ତାଙ୍କର ମିତ୍ର ପାଲଟି ଅନେକ କ୍ଷେତ୍ରରେ ଉପକାର ମଧ୍ୟ କରିଛନ୍ତି । ହନେ ଯେଉଁମାନେ ମହତାବଙ୍କର ଶତ୍ରୁ ସାଜିଥିଲେ ସେହିମାନେ ଏବେ ଶତମୁଖରେ ମହତାବଙ୍କ ପ୍ରଶଂସା ଗାଉଛନ୍ତି । ଯେଉଁ ବ୍ରିଟିଶ ସରକାର ବିରୁଦ୍ଧରେ ମହତାବଜୀ ସଂଗ୍ରାମ ଚଳାଇଥିଲେ ସେହି ଇଂରେଜ ବନ୍ଧୁମାନେ ମହତାବଙ୍କର ଯେତେ ଯେତେ ଉପକାର କରିଥିଲେ ତାହା ଲେଖିହେବ ନାହିଁ । ଫାଶି ମୁହଁରୁ ସେମାନେ ତାଙ୍କୁ ବଞ୍ଚାଇ ଥିଲେ ।

ବେଜଲଗେଟ୍ ହତ୍ୟା ଘଟଣାରେ ମହତାବଙ୍କୁ ପ୍ରଧାନ ନାୟକ କରି ଇଂରେଜ ସରକାର ଫାଶି ଦେବାକୁ ଚକ୍ରାନ୍ତ କରିଥିଲେ । ଯେହେତୁ ରଣପୁରର ଉତ୍ତ୍ୟକ୍ତ ଜନତା ତତ୍କାଳୀନ ପଲିଟିକାଲ୍ ଏଜେଣ୍ଟ ବେଜଲଗେଟ୍‌କୁ ମାରିଦେଲା ପରେ ରଣପୁର ଗଡ଼ଜାତ ଛାଡ଼ି କିଏ କୁଆଡ଼େ ପଳାଇ ଯାଇଥିଲେ । ଏ ଖବର ପାଇ ମହତାବବାବୁ ପ୍ରଥମେ ରଣପୁର ଗଲେ··· ବ୍ରିଟିଶ ସୈନ୍ୟ ରଣପୁରରେ ପହଞ୍ଚିବା ପୂର୍ବରୁ ମହତାବଜୀ ରଣପୁରରେ ପହଞ୍ଚିଥିଲେ ଓ ରଣପୁରର ପ୍ରଜାମାନଙ୍କୁ ସାହାଯ୍ୟ ସହଯୋଗ କରୁଥିଲେ ।···ଇଂରେଜ ସରକାର ମହତାବଙ୍କୁ ପ୍ରଧାନ ଆସାମୀ କରି ହତ୍ୟା ମାମଲାରେ ସାମିଲ୍ କଲେ । ସି: ଆଇ: ଡ: ରିପୋର୍ଟ ମଧ୍ୟ

ମହତାବଙ୍କୁ ହତ୍ୟାର ନାୟକ ବୋଲି କହିଲେ । ମାତ୍ର ମହତାବଙ୍କ ଇଂରେଜ ବନ୍ଧୁ ତତ୍କାଳୀନ ଲର୍ଡ୍ ସାହେବ ହଥର୍ନଲୁଇସ ସ୍ପଷ୍ଟଭାବେ କହିଲେ ଯେ "ଦେଶଜଲଗେଟ୍ ହତ୍ୟା ଖବର ପାଇସାରି ହରେକୃଷ୍ଣ ମହତାବ 'ରଣପୁର ଯାଇଥିଲେ ଶାନ୍ତି ରକ୍ଷା କରିବା ପାଇଁ ।"…ଏହା ଫଳରେ ମହତାବଜୀଙ୍କୁ 'ରାଜଦ୍ରୋହ' ଅପରାଧରୁ ଖଲାସ କରି ଫାଶି ମୁହଁରୁ ରକ୍ଷା କରାଗଲା । ଏଥିପାଇଁ ଗାନ୍ଧିଜୀଙ୍କ ସାହାଯ୍ୟ ଓ ମିସ୍ ଆଗାଥା ହାରିସନଙ୍କ ସହାନୁଭୂତି ତଥା ସକ୍ରିୟ ସହଯୋଗ ସ୍ମରଣୀୟ । 'କନକାମେଳ' ବେଳେ ତତ୍କାଳୀନ କନକା ରାଜା ମହତାବଙ୍କ ନେତୃତ୍ୱରେ କ୍ଷୁବ୍ଧ ହୋଇ ଯେଉଁ ମୋକଦ୍ଦମା କରିଥିଲେ ତହିଁରେ ଗୋରାସାହେବଙ୍କ ସହାୟତାରେ ମହତାବଜୀ ବିଜୟ ହାସଲ କରିଥିଲେ ।

ଗୁଣ ଚିହ୍ନେ ଗୁଣିଆ ।—କ୍ୟାବିନେଟ ମିଶନ ଭାରତ ଆସି କ୍ଷମତା ହସ୍ତାନ୍ତର ବିଷୟରେ ଆଲୋଚନା କଲାବେଳେ ଚତୁର ରାଜନୀତିଜ୍ଞ ସାର ଷ୍ଟାଫୋର୍ଡ଼କ୍ରିପସ୍ ହରେକୃଷ୍ଣ ମହତାବଙ୍କୁ ଜଣେ ବିଶିଷ୍ଟ ଡିପ୍ଲୋମାଟ ବୋଲି ଚିହ୍ନିତ କରି ଇଣ୍ଟରିମ୍ ଗଭର୍ଣ୍ଣମେଣ୍ଟରେ ନେବାକୁ, ପଟେଲ ପ୍ରଭୃତିଙ୍କ ସାଙ୍ଗରେ ମହତାବଙ୍କୁ ବାଛିଥିଲେ । ମାତ୍ର ମହାତ୍ମା ଗାନ୍ଧିଙ୍କ ଅନୁରୋଧ କ୍ରମେ ମହତାବବାବୁ ମାଉଣ୍ଟବେଟେନଙ୍କୁ ଚିଠି ଲେଖିଲେ— "ମୁଁ ଜଣେ ଶୃଙ୍ଖଳାବଦ୍ଧ ସୈନିକ ସ୍ୱଭାବରେ ଗାନ୍ଧିଜୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ନିର୍ଦ୍ଦେଶ ମାନି ଅନୁରୋଧ କରୁଛି, ମୋ' ସ୍ଥାନରେ ଶ୍ରୀଯୁକ୍ତ ଶରତଚନ୍ଦ୍ର ବୋଷଙ୍କୁ ମଧ୍ୟବର୍ତ୍ତୀକାଳୀନ ସରକାରରେ ନିଆଯାଉ ।"

ଯେତେବେଳେ ଇଂରେଜ ସରକାର ଭାରତ ଛାଡ଼ି ଯିବାକୁ ବସିଲେ ସେତେବେଳେ ଦେଶୀୟ ରାଜ୍ୟର ରାଜା, ମହାରାଜାମାନଙ୍କୁ ସାର୍ବଭୌମ ସ୍ୱାତନ୍ତ୍ର୍ୟ ଦେଇଯିବାକୁ ପ୍ରସ୍ତାବ କରିଥିଲେ । ମାତ୍ର ମହତାବ ବାବୁ ଅଟିଲି କମିଟି ରିପୋର୍ଟ ଅନୁଯାୟୀ ଦେଶୀୟ ରାଜ୍ୟର ମିଶ୍ରଣ ବିଶେଷତଃ ଓଡ଼ିଶା ସହିତ ଓଡ଼ିଶାର କରଦରାଜ୍ୟର ମିଶ୍ରଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ତାହା ନ ହୋଇଥିଲେ ଭାରତର ୫୦୦ ଦେଶୀୟ ରାଜ୍ୟ ସାର୍ବଭୌମ ସ୍ୱାତନ୍ତ୍ର୍ୟ ପାଇ ଭାରତର ଅଖଣ୍ଡତା ବିପନ୍ନ କରିଥାନ୍ତେ । ଦେଶୀୟ ରାଜ୍ୟ କମିଟିର ଚେୟାରମେନ ସର୍ଦ୍ଦାର

ବଲ୍ଲଭଭାଇ ପଟେଲ, ସମ୍ପାଦକ ଡକ୍ଟର ହରେକୃଷ୍ଣ ମହତାବ, ବଳବନ୍ତ-ରାଓ ମେହେଟା ପ୍ରଭୃତିଙ୍କ ଉଦ୍ୟମରେ ଭାରତର ମାନଚିତ୍ର ବଦଳିଗଲା । ଭାରତର ପ୍ରଧାନମନ୍ତ୍ରୀ ଅଟଲେ ମହତାବଙ୍କ ଉଦ୍ୟମକୁ ସଫଳ କରାଇଲେ; ଯଦ୍ଦ୍ୱାରା ଓଡ଼ିଶାରେ ମହତାବବାବୁଙ୍କ ଦ୍ୱାରା ପ୍ରଥମେ ଦେଶୀୟ ରାଜ୍ୟ ମିଶ୍ରଣ ହେଲା ପରେ ଅନ୍ୟାନ୍ୟ ଦେଶୀୟ ରାଜ୍ୟକୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ମିଶ୍ରଣ କରାଇଥିଲେ ।

ମହତାବବାବୁ ବାଲେଶ୍ୱର ଜିଲ୍ଲାବୋର୍ଡ଼ର ଚେୟାରମେନ ଥିବା ବେଳେ ତାଙ୍କ ନାମରେ ରାଜା, ଜମିଦାରମାନେ ଯେଉଁ ମୋକଦ୍ଦମା କରିଥିଲେ ତହିଁରେ ଅନେକ ଗୋରା ଅଫିସର ମହତାବଙ୍କୁ ବିଶେଷ ସାହାଯ୍ୟ କରିଥିଲେ···ହୀରାକୁଦ ବନ୍ଧ ନିର୍ମାଣ ବେଳେ ମହତାବଙ୍କର ଅନେକ ବନ୍ଧୁ ଶତ୍ରୁ ସାଜି ଯେଉଁ ହୀରାକୁଦ ବିରୋଧୀ ଆନ୍ଦୋଳନ କଲେ ତାହାଙ୍କୁ ମହତାବଜୀ ପ୍ରତିହତ କରି ଯେଉଁ ହୀରାକୁଦ ବନ୍ଧ ନିର୍ମାଣ କରାଇଲେ, ତଦ୍ଦ୍ୱାରା ଶତ୍ରୁପକ୍ଷ ମଧ୍ୟ ତାଙ୍କର ବଶ୍ୟତା ସ୍ୱୀକାର କରିଥିଲେ ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାବେଳେ ରଙ୍ଗେଇଲୁଣ୍ଠାରେ ରାଜଧାନୀ ହେବାକୁ କଳ୍ପନାଜଳ୍ପନା ଚାଲିଥିଲା । ମାତ୍ର ମହତାବବାବୁ ସେ ପ୍ରସ୍ତାବ ପ୍ରତି ଧ୍ୟାନ ନ ଦେଇ ଭୁବନେଶ୍ୱରରେ ନୂଆ ରାଜଧାନୀ କରିବାକୁ ପଣ୍ଡିତ ଜବାହାରଲାଲ ନେହରୁଙ୍କୁ ଆଣି ଯେତେବେଳେ ଶୁଭ ଦେଲେ, ସେତେବେଳେ ଚାରିଆଡ଼େ ପ୍ରବଳ ସମାଲୋଚନା ଚାଲିଲା ଓ ପ୍ରଚାର ହେଲା, ଏ ମରୁଭୂମିରେ ରାଜଧାନୀ ହେଉଛି, ପାଣି ମିଳିବନି ।······ବର୍ତ୍ତମାନ ସେହି ରାଜଧାନୀ "ଉଦ୍ୟାନ ନଗରୀ" ନାମରେ ଅଭିହିତ ହେଉଛି । ଆଗାମୀ ଦଶବର୍ଷ ଭିତରେ ଖୋର୍ଦ୍ଧାର ପର୍ଯ୍ୟନ୍ତ ଏହି ରାଜଧାନୀ ସଂପ୍ରସାରିତ ହୋଇ ପାରିବ ବୋଲି ଯୋଜନା କରାଯାଉଛି । ଏଥିରୁ ଡଃ ମହତାବଙ୍କ ଦୂରଦୃଷ୍ଟିର ପରିଚୟ ମିଳେ ।

ଓଡ଼ିଶାରେ ପ୍ରତିଭାପୂଜା ଓ ଗୁଣର ଆଦର ପରିବର୍ତ୍ତେ ହିଂସା, କପଟତା ଓ ପରଶ୍ରୀକାତରତାରେ ସମସ୍ତେ ଜର୍ଜରିତ ଥିବାବେଳେ ମହତାବ ଯେଉଁଭଳି ଯଶସ୍ୱୀ ଓ ଗୌରବାନ୍ୱିତ ହୋଇ ପାରିଛନ୍ତି—ତାହା କେବଳ ଅସୀମ ତ୍ୟାଗ, ବିରାଟ ଆଦର୍ଶ ଓ ଅଦମ୍ୟ କର୍ତ୍ତବ୍ୟ ନିଷ୍ଠା,

ବିଶେଷ ସଂଗ୍ରାମ ଓ ସାଧନା ଯୋଗୁଁ ସମ୍ଭବ ହୋଇ ପାରିଛି । ଓଡ଼ିଶାର ସୌଭାଗ୍ୟ ଯେ ମହତାବଙ୍କ ଭଳି ବରପୁତ୍ର ଓଡ଼ିଶାରେ ଜନ୍ମିଛନ୍ତି ।

ମହାତ୍ମା ଗାନ୍ଧି ବଞ୍ଚିଥିବାବେଳେ ମହତାବଙ୍କ କର୍ମକୁଶଳତାରେ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି ଦୀନବନ୍ଧୁ ଏଣ୍ଡ୍ରୁଜ, ଠକ୍କର ବାପା, ମୀରାବେନ ପ୍ରମୁଖ ବିଶିଷ୍ଟ ଦେଶସେବୀଙ୍କ ନିକଟରେ ତାଙ୍କର ପ୍ରଶଂସା କରିଥିଲେ ।

ଚୀନ ଯୁଦ୍ଧବେଳେ କୃଷ୍ଣମେନନ ଓ ନେହରୁଙ୍କର କାର୍ଯ୍ୟ-କଳାପକୁ ସମାଲୋଚନା କରି ମହତାବଜୀ କଂଗ୍ରେସ ପାର୍ଲିଆମେଣ୍ଟାରୀ ପାର୍ଟିରେ ବହୁ ପ୍ରଶଂସା ପାଇଥିଲେ ।

ମୟୂରଭଞ୍ଜ ଓଡ଼ିଶାରେ ନ ମିଶି ନୂତନ ରାଜ୍ୟ ରହିବାପାଇଁ ଉଦ୍ୟମ ହେଉଥିବାବେଳେ ରାଜେନ୍ଦ୍ରପ୍ରସାଦ ମୟୂରଭଞ୍ଜ ବିଧାନସଭାକୁ ଅଭିନନ୍ଦନ ଜଣାଇଥିଲେ । ଏହା ଗଡ଼ଜାତ ମିଶ୍ରଣ ବିରୋଧୀ କାର୍ଯ୍ୟ ବୋଲି ମହତାବ ଦର୍ଶାଇବାରୁ ସର୍ଦ୍ଦାର ପଟେଲ ଓ ନେହରୁଙ୍କ ନିକଟରେ ରାଜେନ୍ଦ୍ରପ୍ରସାଦ ଭୁଲ୍ ସ୍ୱୀକାର କରିଥିଲେ ।

ବିନୋବାଭାବେଙ୍କ ଭୂଦାନ ଆନ୍ଦୋଳନକୁ "ଦାରିଦ୍ର୍ୟ ବଣ୍ଟନ" କହି ମହତାବବାବୁ ଯେଉଁ ବିବୃତି ଦେଲେ, ତାହା ସାରା ଭାରତରେ ଚହଳ ପକାଇଥିଲା ଓ ବହୁ ଜ୍ଞାନୀ, ଚିନ୍ତାଶୀଳ ବ୍ୟକ୍ତି ମହତାବଙ୍କ ଯୁକ୍ତିକୁ ସମର୍ଥନ କରିଥିଲେ ।

ଶେଷରେ ଭୁବନେଶ୍ବରଠାରେ ହୋଇଥିବା ନିଖିଳ ଭାରତ କଂଗ୍ରେସ ଅଧିବେଶନରେ ମହତାବଜୀ କଂଗ୍ରେସର ସମାଜବାଦ ପ୍ରସ୍ତାବ ସମ୍ପର୍କରେ କହିଥିଲେ—"କଂଗ୍ରେସର ସମାଜବାଦ ପ୍ରସ୍ତାବ (ସନ୍ଦର୍ଭ-ଲେଖା) ପାଇଁ ଉତ୍କୃଷ୍ଟ ମିଳିପାରେ, କାର୍ଯ୍ୟତଃ ଫଳ କିଛି ହେବନାହିଁ । ଥିସିସ୍ ଲେଖି ଉତ୍କୃଷ୍ଟ ପାଇବା ସହଜ, ମାତ୍ର ସମାଜବାଦ ପ୍ରତିଷ୍ଠା ପାଇଁ କିଛି ଅନୁଷ୍ଠାନ ହେଉ ନ ଥିବାରୁ ସମାଜବାଦ ଧୁନ ଏକ ଫେସନରେ ପରିଣତ ହେଉଛି ।"

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ କେନ୍ଦ୍ରରେ ମନ୍ତ୍ରୀ ଥିବାବେଳେ ମହତାବଙ୍କ ସମ୍ପର୍କରେ କହିଥିଲେ—"ନିଆଁ ସହିତ ନ ଖେଳି ନିଆଁକୁ ଆୟତ୍ତ କରିବା ତାଙ୍କଠାରୁ ଶିଖିତବ୍ୟ ।"...

ଗଡ଼ଜାତ ମିଶ୍ରଣ ପାଇଁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ଓଡ଼ିଶା ଆସିବା ପୂର୍ବରୁ ମହତାବବାବୁ ନୀଳଗିରିର ଶାସନ ଭାର ନେଇ ସାରି-ଥିଲେ । ଆଠଗଡ଼, ବଡ଼ମ୍ବା, ତିଗିରିଆ, ରଣପୁର ପ୍ରଭୃତି ଆଉ ଆଠଟି ଗଡ଼ଜାତ ଓଡ଼ିଶାରେ ମିଶିବେ ବୋଲି ଲେଖି ଦେଇଥାନ୍ତି । ମିଶ୍ରଣ ଆନ୍ଦୋଳନ ଖୁବ୍ ଜୋର୍‌ସୋରରେ ଚାଲିଥାଏ ।...ଏଣେ ରଜାମାନେ ତଥାକଥିତ ଲୋକପ୍ରତିନିଧି ଶାସନ ପ୍ରଚଳନ କରିବେ ବୋଲି ଘୋଷଣା କରିଥାନ୍ତି । ପ୍ରଜାମଣ୍ଡଳ ବିରୁଦ୍ଧରେ ରଜାମାନେ ନିଜର ଆପଣାର ଲୋକଙ୍କୁ ନେଇ ତଥାକଥିତ ପ୍ରଜାମଣ୍ଡଳ ଗଢ଼ିଥାନ୍ତି । ସେଦିନ ବିହାରୀ-ବାଗରେ ଏଥିପାଇଁ ଗୋଟିଏ ମିଟିଂ ବସିଥାଏ । ସେଠାରେ ଅନେକ ନେତା ମନ୍ତ୍ରୀ ହେବା ଲାଳସାରେ ମିଶ୍ରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ରଜାମାନଙ୍କ "ଲୋକ ପ୍ରତିନିଧି" କଥାକୁ ସମର୍ଥନ କଲେ । ମହତାବ-ବାବୁ ଦେଖିଲେ ଆଲୋଚନାର ଗତି ଭିନ୍ନ ରୂପ ଧାରଣ କରୁଛି । ସେ କ୍ରୋଧରେ ଥରି ଉଠି କହିଲେ—ଯେଉଁମାନେ ଆଜି ଭାରତବର୍ଷର ଡଳକୁ ଶୃଙ୍ଖଳରେ ଦେବାକୁ ବସିଛନ୍ତି, ମୁଁ ସେମାନଙ୍କୁ ମୁକାବିଲା କରିବାକୁ ପ୍ରସ୍ତୁତ । ମୋର ବି ପ୍ରଜାମଣ୍ଡଳ ପାଇଁ କଷ୍ଟ ଅଛି । ରଜା-ମାନଙ୍କ ସହାୟତାରେ ସରକାର ଗଠନ ଏକ ଚରମ ଛଳନା ମାତ୍ର । ରଜାଙ୍କ ମନ୍ତ୍ରୀ ହେବାପାଇଁ ଯେଉଁମାନେ ମିଶ୍ରଣ ବିରୁଦ୍ଧରେ ସ୍ୱର ଉଠାଇବେ, ସେମାନଙ୍କୁ ଦୃଢ଼ ହସ୍ତରେ ଦମନ କରାଯିବ । ଜାତଦ୍ରୋହୀ ମାରି ଗାଲ ଭାଙ୍ଗି ଯିବ । (ମହତାବଙ୍କ ଦେହରୁ ଝାଳ ବୋହିଗଲା । ତେଣୁ ସେ ତାଙ୍କ ପଞ୍ଜାବୀରେ ହାତ ଖୋସିଦେଲେ)...ମହତାବ ବାବୁଙ୍କ ଭାଷଣ ପରେ ଗଡ଼ଜାତ ମିଶ୍ରଣ ସପକ୍ଷରେ ପ୍ରସ୍ତାବ ହୋଇ ରଜାଙ୍କ ଅଧୀନରେ ମନ୍ତ୍ରୀ ହେବାକୁ ପ୍ରଜାମଣ୍ଡଳ ମନା କଲା ।

ସ୍ୱାଧୀନତାର ପ୍ରାକ୍ କାଳରେ ୧୯୪୬ ମସିହାରେ ମହତାବବାବୁ ପ୍ରଥମେ ଯେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ, ସେତେବେଳେ

ଦେଶରେ ଯୁଦ୍ଧପର ପୁନର୍ଗଠନ ଯୋଜନା; ମୁସଲିମଲିଗ୍ ଦ୍ୱାରା ସାଂପ୍ରଦାୟିକ ଦଙ୍ଗା ହଙ୍ଗାମା, ଏଣେ ପୁଣି ରଜା, ଜମିଦାରଙ୍କ ଶୋଷଣ ଓ ଅତ୍ୟାଚାର, ରାଜନୈତିକ ଦୁଃସ୍ଥିତି ଓ ଅର୍ଥନୈତିକ ଦୁରବସ୍ଥା କହିଲେ ନ ସରେ । ସେତେବେଳେ ପୁଣି ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପାରଳା ମହାରାଜା ପ୍ରଭୃତି କଂଗ୍ରେସ ବିରୁଦ୍ଧରେ ଥାନ୍ତି । ମାତ୍ର ହରେକୃଷ୍ଣ ମହତାବ ଏଭଳି ଦକ୍ଷତାର ସହିତ ଶାସନ ଚଳାଇଲେ ଯେ ସାରା ଭାରତରେ ଓଡ଼ିଶାର ଶାନ୍ତିଶୃଙ୍ଖଳା ସନ୍ତୋଷଜନକ ବୋଲି ଗାନ୍ଧିଜୀ କହିଥିଲେ ।

ମହତାବ ମୁଖ୍ୟମନ୍ତ୍ରୀ ଥିବାବେଳେ ଓଡ଼ିଶାରେ ପ୍ରଥମେ ଲୁଗାକଳ ବସିଲା । ସେତେବେଳେ ଗାନ୍ଧିଜୀଙ୍କ ପାଖରେ ଆପତ୍ତି ଉଠିଲା—ହରେକୃଷ୍ଣ ମହତାବ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ହୋଇ ଓଡ଼ିଶାରେ ଲୁଗାକଳ ସ୍ଥାପନ କରୁଛନ୍ତି କିପରି ? ଏଥିପାଇଁ ଚାରିଆଡ଼େ ଭାରି ସମାଲୋଚନା ଚାଲିଲା । ମାତ୍ର ମହତାବ ବାବୁ ଅତି ଦକ୍ଷତାର ସହିତ କହିଲେ—"ଯୁଦ୍ଧପର ପୁନର୍ଗଠନ ଯୋଜନା ଅନୁଯାୟୀ ବମ୍ବେ, ଗୁଜୁରାଟ ପ୍ରଭୃତି ସ୍ଥାନରେ ଯେଉଁ ନୂଆ ଲୁଗାକଳ ବସିବା ପାଇଁ ପ୍ରସ୍ତାବ ହୋଇଛି, ସେମାନେ ଯଦି ନ କରିବେ, ତେବେ ଓଡ଼ିଶାରେ ହେବ ନାହିଁ । ମାତ୍ର ଯେଉଁଠି ଲୁଗାକଳ ଅଛି ସେଠାରେ ଆହୁରି ଅଧିକ ହେଉଥିବା ବେଳେ ଓଡ଼ିଶାରେ ଗୋଟିଏ ମାତ୍ର କଳ ବସାଇବାରେ ଏତେ ଆପତ୍ତି କାହିଁକି ?" ଏହାଛଡ଼ା ଶାସନର ପ୍ରଧାନ ଓ ପ୍ରଥମ କାର୍ଯ୍ୟ ହେଉଛି ଲୋକଙ୍କ ପାଇଁ ଦାନା କନାର ସୁବ୍ୟବସ୍ଥା କରିବା···ଗାନ୍ଧିଜୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟି ମହତାବଙ୍କ ଯୁକ୍ତିରେ ଏକମତ ହେଲେ ।

ସ୍ୱାଧୀନତା ପୂର୍ବରୁ ଗାନ୍ଧି ଓ ଜିନ୍ନାଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗିଥାଏ । ଗାନ୍ଧିଜୀ ସାଂପ୍ରଦାୟିକତାର ବିଲୋପ ପାଇଁ ଉଦ୍ୟମ କରୁଥିବା ବେଳେ ଜିନ୍ନା ସାହେବ ମୁସଲିମ ରାଷ୍ଟ୍ରଗଠନ ଲାଗି ଜିଦ୍ ଧରି ବସିଥାନ୍ତି । ମୁସଲିମଲିଗ୍ ତରଫରୁ ଉଦ୍ୟମ ଚାଲିଥାଏ ଚାରିଆଡ଼େ ସାଂପ୍ରଦାୟିକ ଦଙ୍ଗାହଙ୍ଗାମା ସୃଷ୍ଟି କରିବା ପାଇଁ । ଏପରିକି ଓଡ଼ିଶାରେ ହିନ୍ଦୁ-ମୁସଲମାନ କଳହ ସୃଷ୍ଟି କରିବା ପାଇଁ ମୁସଲିମଲିଗ୍ ତରଫରୁ କୌଶଳ

କର ଭଦ୍ରକଠାରୁ ଖଡ଼ଗପୁର ପର୍ଯ୍ୟନ୍ତ ମୁସଲମାନମାନଙ୍କୁ ଉତ୍ୟକ୍ତ କରାଯାଉଥାଏ । ଶହ ଶହ ପେଶଓ୍ୱାରୀ ଗୁଣ୍ଡାଙ୍କୁ ଆଣି ମୁସଲମଲୀଗ ତରଫରୁ ଠିକ କରାଯାଉଥାଏ । ମାତ୍ର ମହତାବ ବାବୁ ଏହା ଜାଣିପାରି ଶାସନ ଶୃଙ୍ଖଳାକୁ ଏଭଳି ସୁଦୃଢ଼ କଲେ ଯଦ୍ଦ୍ୱାରା କେଉଁଠି ଟିକିଏ ହେଲେ କିଛି ଗଣ୍ଡଗୋଳ ହେଲା ନାହିଁ । ମୁସଲମଲୀଗ ଚେଷ୍ଟା କରୁଥାଏ କୌଣସି ପ୍ରକାର ଗଣ୍ଡଗୋଳ ସୃଷ୍ଟି କରିଦେଲେ ସେମାନେ ଇଂରେଜ ସରକାରଙ୍କୁ ଦେଖାଇ ଦେଇ କହିଥାନ୍ତେ—ଓଡ଼ିଶାରେ ଶତକଡ଼ା ୪ ଜଣ ମୁସଲମାନ, ଅଥଚ ହିନ୍ଦୁମାନେ ସେମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି; କିନ୍ତୁ ମହତାବଙ୍କ ଦ୍ୱାରା ସେ କୌଶଳ ପଣ୍ଡ ହୋଇ ଯାଇଥିଲା ।

ମହତାବଙ୍କ କେନ୍ଦ୍ରରେ ଯେତେବେଳେ ମନ୍ତ୍ରୀ ହେଲେ, ସେତେବେଳେ କେନ୍ଦ୍ରମନ୍ତ୍ରୀମାନଙ୍କୁ ପୁଲିସ ଜଗୁଥିଲେ । ମାତ୍ର ମହତାବ ବାବୁ, ତାଙ୍କୁ ପୁଲିସ ଜଗିବେ ନାହିଁ ବୋଲି କହି ମନ୍ତ୍ରୀଙ୍କ ବାସଭବନ ଆଗରୁ ପୁଲିସ ପହରା ଉଠାଇ ଦେଇଥିଲେ ।

## ମାଲବାରହିଲରୁ ଦଳେଇ ଘାଇ :

ଏକଥା କେହି ବିଶ୍ୱାସ କରି ପାରିବେନି ଯେ ନିଜ ସୁଖ-ସ୍ୱାର୍ଥକୁ ବଳି ଦେଇ ମହତାବଙ୍କ ଓଡ଼ିଶା ସ୍ୱାର୍ଥକୁ କେତେ ବଡ଼ ମନେ କରନ୍ତି । ଯେତେବେଳେ ୧୯୫୫ରେ ଦଳେଇ ଘାଇ ଭାଙ୍ଗିଲା—ମାଲବାର ହିଲ ରାଜଭବନ ଛାଡ଼ି ମହତାବ ବାବୁ ଧାଇଁ ଆସିଥିଲେ ଓଡ଼ିଶାର ବନ୍ୟାବିପନ୍ନ ଦୁର୍ଗତଙ୍କ ସେବା ପାଇଁ । ମହତାବଙ୍କୁ କ୍ଷମତାଲୋଭୀ ବୋଲି ଯେଉଁମାନେ କହନ୍ତି, ସେମାନେ ବୁଝିବା ଉଚିତ ଯେ ମହତାବଙ୍କ ଇଚ୍ଛା କରିଥିଲେ ଆହୁରି କେତେବର୍ଷ ରାଜ୍ୟପାଳ ରହିପାରିଥାନ୍ତେ ।

ଓଡ଼ିଶାର ରାଜନୈତିକ ଅଭିଧାନ ଯେଉଁମାନେ ବିଶ୍ଳେଷଣ କରନ୍ତି, ସେମାନେ ଜାଣନ୍ତି ଓଡ଼ିଶାରେ କଂଗ୍ରେସ ବ୍ୟତୀତ ଅନ୍ୟ ରାଜନୈତିକ ଦଳର ପ୍ରାଧାନ୍ୟ ନଥିଲା । ମାତ୍ର ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାରେ ଯେଉଁ "ଗଣତନ୍ତ୍ର ପରିଷଦ" ଦଳ ରଜାମହାରାଜାମାନେ ଗଢ଼ିଲେ, ତଦ୍ଦ୍ୱାରା କଂଗ୍ରେସର ପଥ କଣ୍ଟକାକୀର୍ଣ୍ଣ ହୋଇ ପଡ଼ିଲା । ତତ୍ପର

ମହତାବ ଦେଖିଲେ ଗଣତନ୍ତ୍ର ପରିଷଦକୁ ବିଲୋପ କରିବାକୁ ହେବ । ତେଣୁ ସେ ପ୍ରଥମେ ଯେତେବେଳେ ଗଣତନ୍ତ୍ର ପରିଷଦର ପାଟଣା ମହାରାଜା ସହିତ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିଲେ ସେତେବେଳେ ମହତାବଙ୍କୁ ଚାରିଆଡ଼େ ସମାଲୋଚନା ଚାଲିଲା । ମାତ୍ର ମହତାବଜୀ ଏଥିପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନୁମୋଦନ ଆଣିଥିଲେ । ମହତାବ ବାବୁ ହସି ହସି କହିଲେ—କ୍ଷୀରରେ ନୀର ମିଶିବା ସହଜ । ଅର୍ଥାତ୍ ଦୁଧରେ ପାଣି ମିଶିଲେ ଦୁଧ ତା'ର ଧର୍ମ ହରାଇ ନ ଥାଏ । ଯେତେ ପାଣି ମିଶିଲେ ସେ ଦୁଧ । ମାତ୍ର ତେଲରେ ପାଣି ମିଶେ ନାହିଁ, ମୁଁ ମଧ୍ୟ ତାହା କରୁନାହିଁ । ସତକୁ ସତ ମହତାବଜୀ ପାଟଣା ମହାରାଜାଙ୍କ ସହିତ ମିଳିତ ମନ୍ତ୍ରୀମଣ୍ଡଳ କରି ଗଣତନ୍ତ୍ର ପରିଷଦର ସମାଧି ରଚନା କଲେ—କହିଲେ ଅତ୍ୟୁକ୍ତି ହେବ ନାହିଁ । ମିଳିତ ମନ୍ତ୍ରୀମଣ୍ଡଳ ପରେ ଗଣତନ୍ତ୍ର ପରିଷଦର ବିଲୋପ ଘଟିଲା ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ରାଜନୈତିକ ଜୀବନ ରାମାୟଣ, ମହାଭାରତ, ଗୀତା ଏବଂ ପୁରାଣଶାସ୍ତ୍ର ନୀତି ନିୟମ ଦ୍ୱାରା ପ୍ରଭାବିତ । ମହତାବଜୀ ଶାସନ କ୍ଷେତ୍ରରେ ଖାଲି ରାମାୟଣ, ମହାଭାରତ ଓ ଗୀତାର ନୀତିନିୟମ ଅନୁସରଣ କରନ୍ତି ନାହିଁ, ସେ ଗାନ୍ଧିଜୀଙ୍କ ନୀତି ଆଦର୍ଶରୁ ତିଳେ ମାତ୍ର ବିଚ୍ୟୁତ ହୁଅନ୍ତି ନାହିଁ ।

## ମହତାବଙ୍କ ବାଣୀ :

—"ରାଜନୀତିରେ କେହି କାହାରିକୁ ସୁବିଧା ଛାଡ଼ି ଦିଅନ୍ତି ନାହିଁ । ନିଜ ନିଜର ସୁବିଧା ସୁଯୋଗ ନିଜେ ବାଛିନେବାହିଁ ରାଜନୈତିକ ଚତୁରତାର କାର୍ଯ୍ୟ—"

× × × ×

—"ପୂର୍ବରୁ ମୁଁ ଯାହା କହିଥିଲି ଏବଂ ବର୍ତ୍ତମାନ ଯାହା କହୁଛି, ତାକୁ ଯଦି ମତ ପରିବର୍ତ୍ତନ ବୋଲି ବୁଝାଯାଏ, ତାହାହେଲେ ମୁଁ କହିବି ସେଥିରେ ଅଯୁକ୍ତିକର ବା ଅନ୍ୟାୟ କିଛି ନାହିଁ । ଯେଉଁମାନେ ରାଜନୈତିକ କ୍ଷେତ୍ରରେ ଅଛନ୍ତି, ସେମାନେ ତାଙ୍କର ମତ ପରିବର୍ତ୍ତନ

କରି ଆସୁଛନ୍ତି । ରାଜନୀତି କିଛି ଗୋଟିଏ ସ୍ଥିର ମତ ନୁହେଁ, ଯାହାକି ମୃତ୍ୟୁ ପର୍ଯ୍ୟନ୍ତ ରହିବ । ଆମର କଂଗ୍ରେସ ତରଫରୁ ଗୋଟିଏ ମତ ସ୍ଥିର ହୋଇଥିଲା, ତାହା ହେଉଛି ଆମେ ପୂର୍ଣ୍ଣ ସ୍ୱାଧୀନ ହେବୁ ନା ବ୍ରିଟିଶ କମନୱେଲଥ ଭିତରେ ରହିବୁ ? ଶେଷରେ ପଣ୍ଡିତ ନେହରୁ ପ୍ରଭୃତି ଯେଉଁମାନେ ସେତେବେଳେ ଥିଲେ, ସେମାନେ ତ ପୁଣି ମତ ପରିବର୍ତ୍ତନ କଲେ । ଅତଏବ ରାଜନୀତିର ମତ ପରିବର୍ତ୍ତନ କିଛି ବଡ଼ କଥା ନୁହେଁ । ସମୟକୁ ଗ୍ରହି ସମସ୍ତେ ମତ ପରିବର୍ତ୍ତନ କରିଥାନ୍ତି । କିନ୍ତୁ ସାଧାରଣ କ୍ଷେତ୍ରରେ ଲୋକେ କୁହନ୍ତି ସେ ତ କାଲି ଏକଥା କହୁଥିଲା, ଆଜି କ'ଣ ଏକଥା କହୁଛି ? ତା'ର ଗୋଟିଏ ଉତ୍ତର ହେଉଛି, ଆଜି ସମୟର ପରିବର୍ତ୍ତନ ହୋଇଛି । ପରିସ୍ଥିତି ବା ସମୟ ସହିତ ପାଦ ମିଳାଇ ଚାଲିବା ରାଜନୈତିକ ବିଜ୍ଞତାର କାର୍ଯ୍ୟ ।"

× × × ×

"...ସେବା କାର୍ଯ୍ୟରୁ ମୋତେ କେହି କେବେ ଅନ୍ତର କରିବ ନାହିଁ—ଯେ ପର୍ଯ୍ୟନ୍ତ ମୋ ଅନ୍ତରରେ ଦେଶପ୍ରୀତି ଉଦ୍‌ବେଳିତ ହେଉଥିବ । ରାସ୍ତାରେ ଛିଡ଼ା ହୋଇ ତୃଷାର୍ଥୀକୁ ପାଣି ବାଣ୍ଟିବା ବି ଏକ ସେବା କାର୍ଯ୍ୟ ।"

× × × ×

...ମହାପ୍ରସାଦ ସେବା ଅର୍ଥ ଖାଇବା । ସେହିପରି ଦେଶସେବା ଅର୍ଥ (ଦେଶର ସ୍ୱାର୍ଥକୁ ବଳିଦେବା) ଦେଶକୁ ଖାଇବା ମାତ୍ରମ୍‌କ...

× × × ×

"ଦେଶାତ୍ମବୋଧ ଚିନ୍ତାରେ ଲୋକ ଚରିତ୍ର ଗଠିତ ନ ହେଲେ ଦେଶସେବା ଓ ସମାଜ ମଙ୍ଗଳ ବିଡ଼ମ୍ବନା ମାତ୍ର ।"

× × × ×

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ରାଜନୈତିକ ଜୀବନ ମାତ୍ର ୧୦ବର୍ଷ ନ ପୂରୁଣୁ ସେ ଆରପାରିକୁ ଚାଲିଯାଇଥିଲେ । ମାତ୍ର ମହତାବଙ୍କ ଦୀର୍ଘ ୭୫ ବର୍ଷ ହେଲା ଦେଶ ଓ ଜାତିର କଲ୍ୟାଣ ପାଇଁ ଯେପରି ନିଃସ୍ୱାର୍ଥପର ଭାବେ ସର୍ବସ୍ୱ ତ୍ୟାଗ କରି ବିଶେଷତଃ ଓଡ଼ିଶାକୁ

ବିଶ୍ୱଦରବାରରେ ଅତି ସମୃଦ୍ଧିଶାଳୀ କରି ଗଢ଼ି ତୋଳିବା ପାଇଁ ଯେଉଁ ସଂଗ୍ରାମ ଓ ସାଧନା କରୁଛନ୍ତି, ଇତିହାସରେ ତାହା ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇ ରହିବ । କେବଳ ରାଜନୀତି ନୁହେଁ, ଓଡ଼ିଆ ସାହିତ୍ୟ ସଂସ୍କୃତିର ବିକାଶ ପାଇଁ ମହତାବଙ୍କ ଅବଦାନ ଚିରସ୍ମରଣୀୟ । ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ, ଝଙ୍କାର, ଇଷ୍ଟର୍ଣ୍ଣଟାଇମସ ପ୍ରଭୃତି ଓଡ଼ିଶାକୁ ମହତାବଙ୍କର ଅବିସ୍ମରଣୀୟ ଅବଦାନ । ପ୍ରକୃତରେ ସେ ହେଉଛନ୍ତି ବୃହତ୍ତର ଉତ୍କଳର ପ୍ରତିଷ୍ଠାତା ।

ଗୀତାର ତ୍ରୟୋଦଶୋଽଧ୍ୟାୟର ୮, ୯, ୧୦, ୧୧, ୧୨ ପଂକ୍ତି ଅନୁଯାୟୀ ହରେକୃଷ୍ଣ ମହତାବ ଜଣେ ବିଶିଷ୍ଟ ଜ୍ଞାନୀ ପୁରୁଷ, ଏଥିରେ କୌଣସି ସନ୍ଦେହ ନାହିଁ ।···ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଗୀତାର ସେହି ଅମର ବାଣୀ ମହତାବଙ୍କ ପ୍ରତି ପ୍ରଯୁଜ୍ୟ । ସେ ଦେବଲକ୍ଷଣଯୁକ୍ତ ମହାମାନବ ।



# ଜଣେ ପୁରୁଣାକାଳିଆ ଲୋକ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ମହତାବ ବାବୁ ବୁଢ଼ା ହେଲେଣି । ୮୫ ପୂରିଗଲା । ୮୬ ଚାଲିବ । କଳିଯୁଗର ପରମାୟୁ ୧୨୦ ବା ୧୦୮ ହେଉ ।

ମହତାବଙ୍କ ସମ୍ପର୍କ ସବୁବେଳେ ମୁଁ ମନମିଳାଇ ଚାଲିନାହିଁ ଜୀବନଯାକ । ରାଜନୀତି କ୍ଷେତ୍ରରେ ମୁଁ ମହତାବଙ୍କର ବିରୋଧ କରୁଥିଲି ସ୍ୱାଧୀନତା ପରେ ପରେ । ତା'ର କାରଣ ମହତାବ ହେଲେ କଂଗ୍ରେସର ନେତା । ମହାତ୍ମା ଗାନ୍ଧି କଂଗ୍ରେସକୁ ଭାଙ୍ଗିଦେବା ପାଇଁ ପରାମର୍ଶ ଦେବା ପରେ ମୁଁ କଂଗ୍ରେସକୁ ଛାଡ଼ିଦେଲି । ତେଣୁ ମୁଁ ମହତାବଙ୍କର ବିରୋଧୀ ହୋଇ ଛିଡ଼ା ହେଲି । ପରବର୍ତ୍ତୀ କାଳରେ ମହତାବ କଂଗ୍ରେସ ଛାଡ଼ିଲା ପରେ ଆମେ ପୁଣି ଏକାଠି ବସିଲୁ । ପୂର୍ବରୁ ଭାରତ ସ୍ୱାଧୀନ ହେବା ଆଗରୁ ଆମେ ଏକାଠି ଥିଲୁ । ବିଶେଷତଃ ଅନେକ ଦିନ ଜେଲ୍ ଭୋଗ କରିଛୁ ଏକା ସାଙ୍ଗରେ ପାଟଣା କ୍ୟାମ୍ପ ଜେଲରେ । ସେଇଠି ମୋର ସାହିତ୍ୟିକ ଜୀବନର ଅସ୍ୱମାରମ୍ଭ । ମୋର ସାହିତ୍ୟ ପାଇଁ ମୁଁ ଯେ କେବଳ ମୋର ସ୍ୱର୍ଗତ ପିତାଙ୍କ ଠାରୁ ପ୍ରେରଣା ପାଇଥିଲି ତା' ନୁହେଁ । ଆଉ ଦୁଇଜଣ ବ୍ୟକ୍ତିଙ୍କର ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । ସେ ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସ ଆଉ ଅନ୍ୟଜଣକ ହେଉଛନ୍ତି ମହତାବ ବାବୁ ।

ଯେଉଁ କେତେଖଣ୍ଡ ବହି ପଢ଼ି ଛାତ୍ର ଜୀବନରେ ମୋର ରାଜନୀତି ପ୍ରତି ଶ୍ରଦ୍ଧା ହୋଇଥିଲା ବା ଇଂରେଜ ଶାସନ ବିରୋଧରେ ଠିଆ ହେବା ପାଇଁ କ୍ରମାନ୍ୱୟରେ ଇଚ୍ଛା ପ୍ରବଳ ହୋଇ ଉଠିଥିଲା, ସେଗୁଡ଼ିକ ମଧ୍ୟରୁ ମହତାବ ବାବୁଙ୍କର 'ପଲାସୀ ଅବସାନେ' ଗୋଟିଏ । ବିଶେଷକଥା, 'ପଲାସୀ ଅବସାନେ' ଇଂରାଜୀ ଶାସକମାନଙ୍କ ଦ୍ୱାରା ବାଜ୍ୟାପ୍ତ ହେଲା ପରେ ଯେଉଁ

ବିଷୟ ପୁସ୍ତିକାଟି ମୋ ଦ୍ୱାରା ଲିଖିତ ହୋଇଥିଲା ଏବଂ ବାଲେଶ୍ୱର 'ପ୍ରଜାତନ୍ତ୍ର' ପ୍ରେସରୁ ପ୍ରକାଶ ପାଇଥିଲା, ତାକୁ ମଧ୍ୟ ତତ୍କାଳୀନ ସରକାର ବାଜ୍ୟାପ୍ତି କରିଦେଲେ । ସେ ପୁସ୍ତିକାର ନାମ ହେଉଛି, ଯେତେଦୂର ମନେପଡ଼େ 'ସ୍ୱରାଜ୍ୟ ପାଇଁ' । ଏ ତ ଗଲା ୧୯୩୧ ମସିହା କଥା, ପ୍ରାୟ ୧୯୩୫ ମସିହାରେ, ମୋର ମନେ ପଡ଼ୁଛି, ଭଦ୍ରକରେ ମହତାବଙ୍କ କୋଠିରେ ବସି ସାହିତ୍ୟ ସମ୍ବନ୍ଧରେ ଆଲୋଚନା କରୁ କରୁ, ସାହିତ୍ୟରେ ନୂଆ ଦିଗଦର୍ଶନ ଦେବା ପାଇଁ ମହତାବ ବାବୁ ହିନ୍ଦୀ ଓ ବଙ୍ଗଳାର କେତେକ ଲେଖା ସମ୍ବନ୍ଧରେ ଉଲ୍ଲେଖ କରିଥିଲେ । ସେହି ସମୟରେ ନିକଟରେ ପଢ଼ିଥିବା ଏକ ହିନ୍ଦୀ କାହାଣୀ ମଧ୍ୟ ସେ ବସି ବସି ଶୁଣାଇଲେ । ସେ କହି ସାରିବା ପରେ ମୁଁ ମଧ୍ୟ ବଙ୍ଗଳାରୁ ଗୋଟିଏ ଗଳ୍ପ ପଢ଼ିଥିବା କଥା କହିଲି । ସେହି ଗଳ୍ପ ଢାଞ୍ଚାରେ ମୁଁ ଆମ ସାମାଜିକ ଜୀବନର ଅବସ୍ଥାକୁ ଖାପ ଖୁଆଇ ଆଉ ଗୋଟିଏ ବଡ଼ ଗଳ୍ପ ଲେଖିଥିବା କଥା କହିଲି । ଗପଟି ଶୁଣି ସେ ଭାରି ଖୁସି ହୋଇଗଲେ ଏବଂ କହିଲେ, ତମେ ଏଇ ଗଳ୍ପଟିକୁ ଗୋଟିଏ ପୁସ୍ତିକା ଆକାରରେ ତମ ପ୍ରେସରେ ଛପାଇ ଦିଅ । ମୁଁ ଛପା ଖର୍ଚ୍ଚ ଦେବି ।

ସେ ପୁସ୍ତିକାର ନାମ ହେଲା 'ମାଉସୀ' । ସୁଖ ଅବା ଦୁଃଖ କଥା ମୁଁ କହି ପାରୁନାହିଁ । ସେ ପୁସ୍ତିକାଟି ପ୍ରକାଶ ପାଇବାର ଦୁଇମାସ ମଧ୍ୟରେ ଇଂରେଜ ସରକାର ତାକୁ ବାଜ୍ୟାପ୍ତି କରିଦେଲେ । ସେ ଦୁଇଖଣ୍ଡଯାକ ବହି ମୋ ପାଖରେ ଆଉ ନାହିଁ । କିନ୍ତୁ ପଲାସୀ ଅବସାନେ ସହିତ ସେ ଦୁଇଖଣ୍ଡ ବହି ଲଣ୍ଡନର ଇମ୍ପେରିଏଲ ଲାଇବ୍ରେରୀରେ ଅଛି ବୋଲି ପ୍ରଜାତନ୍ତ୍ର ସମ୍ବାଦରୁ ଏବେ ଜାଣିଲି ।

ସେ ଯାହାହେଉ, ସେତେବେଳର ରାଜନୀତିକ ନେତାମାନଙ୍କ ମଧ୍ୟରେ ସାହିତ୍ୟ ଯେପରି ଭାବରେ ଅନୁପ୍ରବେଶ କରିଥିଲା, ତାହା ଓଡ଼ିଆ ଜୀବନରେ ତତ୍କାଳୀନ ଏକ ବିରଳ ସମ୍ବାଦ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ଡକ୍ଟର ମହତାବ—ଏଇ ତିନିଜଣ ଶୀର୍ଷସ୍ଥାନୀୟ ରାଜନୀତିକ ନେତା ଏବଂ ଏ ତିନିଜଣଯାକ ତତ୍କାଳୀନ ପ୍ରସିଦ୍ଧ ସାହିତ୍ୟକାର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତିନିଜଣଯାକ ଗଦ୍ୟ ଓ ପଦ୍ୟର ଲେଖକ ଥିଲେ ।

ଏବେ ସେମାନଙ୍କ ଭିତରୁ ଡଃ ମହତାବ କେବଳ ଗଦ୍ୟ ଲେଖକ ହିସାବରେ ପ୍ରସିଦ୍ଧ ।

ତାଙ୍କର ରାଜନୀତିକ ମତ ସମ୍ବନ୍ଧ ମୁଁ ସବୁବେଳେ ଏକ ମତ ହୋଇନାହିଁ । କିନ୍ତୁ ଏବର 'ଗାଁ ମଜଲିସ' ପଢ଼ିଲେ ମତର ଏପରି ଏକଥ ବୁଝାପଡ଼ୁଛି, ଯେପରି ମନେ ହେବ, ସେ ଲେଖାସବୁ ମୋର କଲମରୁ ବାହାରି ପଡ଼ୁଛି ଅବା ।

ପୁରୁଣାକାଳିଆ ଲୋକ ହେଲେ ବି ପୁରୁଣା ଶରୀର ଭିତରେ ନବୀନ ଆତ୍ମାଟିଏ ଧରି ବସିଛନ୍ତି ମହତାବ ବାବୁ । ତାଙ୍କ ଲେଖା ପଢ଼ିଲେ ଏକଥା ସ୍ପଷ୍ଟ ଜଣାପଡ଼ିବ । ଅବଶ୍ୟ ଏକଥା କହିଲା ବେଳେ ମୁଁ ନିଜେ ଜଣେ ମଡର୍ଣ୍ଣ ବା ଆଧୁନିକ ହିସାବରେ ଯିବି କି ନାହିଁ ସେ କଥା କହି ପାରିବି ନାହିଁ । କିନ୍ତୁ ଆଧୁନିକ ପରିସ୍ଥିତିକୁ ଲକ୍ଷ୍ୟ କରି ମୁଁ ମନ ଭିତରେ ଯେଉଁ ମତ ପୋଷଣ କରିଛି, ତା'ର ପକ୍ଷପାତୀ ଶ୍ରୀ ହରେକୃଷ୍ଣ ମହତାବ ।

କାନ୍ତକୁଟୀର
ଡ଼ି-୪, ଲେବର କଲୋନୀ
ଭୁବନେଶ୍ୱର, ପିନ-୭୫୧୦୦୧





୧୯୪୭, ଡିସେମ୍ବର ୧୩ ତାରିଖ : ଗଡ଼ଜାତ ମିଶ୍ରଣ ପୂର୍ବରୁ
ଭୁବନେଶ୍ୱର ବିମାନ ବନ୍ଦରରେ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କୁ
ଡକ୍ଟର ମହତାବଙ୍କ ସ୍ୱାଗତ ସମ୍ବର୍ଦ୍ଧନା

# ଗଡ଼ଜାତ ମିଶ୍ରଣର ନାୟକ

ଶ୍ରୀମତୀ କିରଣବାଳା ପଟ୍ଟନାୟକ

ଆଜି ଭାରତର ରାଜନୈତିକ ଭୂଗୋଳରେ ଓଡ଼ିଶାର ଯେଉଁ ଭୌଗୋଳିକ ସୀମା ଆମେ ଲକ୍ଷ୍ୟ କରୁଛୁ, ତାହା ଗୋଟିଏ ଦିନରୁ ଫଳଶ୍ରୁତି ନୁହେଁ କି ଜଣେ ବ୍ୟକ୍ତିଙ୍କ ସାଧନାର ଫଳ ନୁହେଁ । ଏହାର ପୃଷ୍ଠଭୂମିରେ ରହିଛନ୍ତି କୁଳବୃଦ୍ଧ ମଧୁସୂଦନ ଦାସ । ଉତ୍କଳମଣି ଗୋପବନ୍ଧୁ ଦାସ, ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖ ଜାତୀୟ ନେତା ଏବଂ ଫକୀରମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ ପ୍ରଭୃତି ଓଡ଼ିଆପ୍ରେମୀ ସାହିତ୍ୟିକମାନଙ୍କ ତ୍ୟାଗ ଓ ସାଧନା ଏବଂ ଓଡ଼ିଆ ଲୋକଙ୍କର ଆନ୍ଦୋଳନ, ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଜନୈକ ବଙ୍ଗବାସୀ କାନ୍ତିଲାଲ ଭଟ୍ଟାଚାର୍ଯ୍ୟଙ୍କ ଧ୍ୱନି ବିରୁଦ୍ଧରେ ଫକୀରମୋହନ ସେନାପତି ଓ ସମ୍ବଲପୁରର ଶ୍ରୀପତି ମିଶ୍ର ପ୍ରମୁଖ ସେ ସମୟରେ ସ୍ୱର ଉତ୍ତୋଳନ କରି ନଥିଲେ ଏବଂ ଫକୀରମୋହନଙ୍କ ସମେତ ମଧୁସୂଦନ ରାଓ ପ୍ରଭୃତି ଓଡ଼ିଆ ସାହିତ୍ୟ ଓ ବିଶେଷ କରି ପାଠ୍ୟପୁସ୍ତକ ରଚନା କରି ନଥିଲେ, ହୁଏତ ଓଡ଼ିଆ ଭାଷା ତା'ର ମର୍ଯ୍ୟାଦା ହରାଇ ବସି ଥାଆନ୍ତା । ଏହି ପୂର୍ବସୂରୀମାନଙ୍କ ଅକ୍ଳାନ୍ତ ସାଧନା ଓ ଆନ୍ଦୋଳନ ଫଳରେ ଓଡ଼ିଆ ଯେ ବଙ୍ଗଳାଠାରୁ ଭିନ୍ନ ଓ ଏକ ସ୍ୱତନ୍ତ୍ର ଭାଷା, ତାହା ପ୍ରତିଷ୍ଠିତ ହୋଇ ପାରିଥିଲା । ପରବର୍ତ୍ତୀ କାଳରେ ବ୍ରିଟିଶ ରାଜତ୍ୱରେ ଓଡ଼ିଶା ପ୍ରଥମେ ବଙ୍ଗଳା ଓ ପରେ ବିହାର ସହ ସାମିଲ୍ ହୋଇ ରହିଥିଲା । ସମ୍ବଲପୁର ମଧ୍ୟ କିଛିବର୍ଷ ପାଇଁ ମଧ୍ୟପ୍ରଦେଶ ସହ ସଂଯୁକ୍ତ ହୋଇ ରହିଥିଲା । କିନ୍ତୁ ପରେ ବହୁ ଆନ୍ଦୋଳନ ଫଳରେ ତାକୁ ପୁନର୍ବାର ଓଡ଼ିଶା ସହ ସାମିଲ୍ କରାଯାଇଥିଲା । ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତିକୁ ଜାତୀୟ କଂଗ୍ରେସ

ଗ୍ରହଣ କଲାପରେ ଏବଂ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବାଲାଗି ବହୁ ଆନ୍ଦୋଳନ ପରେ ୧୯୩୬ ମସିହାରେ କଟକ, ପୁରୀ, ବାଲେଶ୍ୱର, ଅନୁଗୁଳ, ଫୁଲବାଣୀ ଓ ସମ୍ବଲପୁରକୁ ନେଇ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମଲାଭ କଲା । କିନ୍ତୁ ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ଦେଖୁଥିବା କୁଳବୃଦ୍ଧ ମଧୁସୂଦନ ତା' ପୂର୍ବରୁ ପୃଥିବୀରୁ ବିଦାୟ ନେଇ ସାରିଥିଲେ ।

ବ୍ରିଟିଶ ଶାସନରୁ ଭାରତର ସ୍ୱାଧୀନତା ପାଇଁ ଜାତୀୟ କଂଗ୍ରେସ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଯେଉଁ ସ୍ୱାଧୀନତା ସଂଗ୍ରାମ ଚଳାଇଥିଲା, ସେଥିରେ ପରିସ୍ଥିତିର ଚାପରେ ବାଧ୍ୟ ହୋଇ ବ୍ରିଟିଶ ସରକାର ୧୯୧୯ ଓ ୧୯୩୫ରେ ଭାରତର ପ୍ରଦେଶମାନଙ୍କୁ ଆଂଶିକ ସ୍ୱାୟତ୍ତ ଶାସନ ପ୍ରଦାନ କରିଥିଲେ । ତଦନୁଯାୟୀ ପ୍ରଦେଶମାନଙ୍କରେ ନିର୍ବାଚିତ ସରକାର କଂଗ୍ରେସ ଦଳ ପକ୍ଷରୁ ଶାସନ ଭାର ଗ୍ରହଣ କରିଥିଲେ । କିନ୍ତୁ ବ୍ରିଟିଶ ଶାସିତ ପ୍ରଦେଶମାନଙ୍କ ଛଡ଼ା ଭାରତରେ ରାଜାରାଜୁଡ଼ାଙ୍କ ଦ୍ୱାରା ଶାସିତ ପାଞ୍ଚଶହଟିରୁ ଊର୍ଦ୍ଧ୍ୱ ଗଡ଼ଜାତ ଓ ଦେଶୀୟ ରାଜ୍ୟ ରହିଥିଲେ । ସେସବୁ ରାଜ୍ୟରେ କୌଣସି ପ୍ରତିନିଧିମୂଳକ ଶାସନ ନଥିଲା । ଏହିସବୁ ଦେଶୀୟ ରାଜ୍ୟ ଭାରତରେ ଅବସ୍ଥାପିତ ଭାଇସ୍‌ରୟଙ୍କ ପୂର୍ଣ୍ଣ ଶାସନାଧୀନ ନ ରହି ସିଧାସଳଖ ବ୍ରିଟିଶ ରାଜାଙ୍କଠାରୁ ବା ଅର୍ଦ୍ଧ-ସାର୍ବଭୌମତ୍ୱ (Suzereinty) ପ୍ରାପ୍ତ ହୋଇଥିଲେ । ବ୍ରିଟିଶ ସରକାର ୧୯୪୭ରେ ଭାରତର ପ୍ରଦେଶମାନଙ୍କୁ ବା ଏକକ ବ୍ରିଟିଶ ଶାସିତ Indian Unionକୁ ସ୍ୱାଧୀନତା ଦେବାପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ବ୍ରିଟିଶ ପାର୍ଲ୍ୟା-ମେଣ୍ଟରେ ଗୃହୀତ Indian Independence Actରେ କେବଳ ବ୍ରିଟିଶ ଶାସିତ ମୋଗଲବନ୍ଦୀ ଅଞ୍ଚଳକୁ ଏହି ସ୍ୱାଧୀନତା ଲାଗୁ ହେବ ବୋଲି ବ୍ୟବସ୍ଥା ଥିଲା । ଏଥିରେ ପୁଣି କୁହାଯାଇଥିଲା ଯେ ଦେଶୀୟ ରାଜ୍ୟଗୁଡ଼ିକ, ଭାରତରେ ବ୍ରିଟିଶ ଶାସନର ଅବସାନ ପରେ, ମୁକ୍ତ ରହି ସ୍ୱ-ଇଚ୍ଛାରେ ସେମାନଙ୍କ ଭିତରେ ଏକ ବା ଏକାଧିକ ରାଜ୍ୟ ସଂଘ (Confedration) ଗଢ଼ି ପାରିବାକୁ କିମ୍ବା କୌଣସି ପଡ଼ୋଶୀ ଦେଶରେ ସାମିଲ୍ ହେବାକୁ ହକ୍‌ଦାର ହୋଇପାରିବେ ।

ସ୍ୱାଧୀନତାର ପ୍ରାକ୍ କାଳରେ ମୁସଲିମ୍ ଲିଗ୍‌ର ଆନ୍ଦୋଳନ ଫଳରେ ଭାରତର ବିଭାଜନ ଅପରିହାର୍ଯ୍ୟ ହୋଇ ପଡ଼ିଲା ଓ ଅଖଣ୍ଡ

'ଭାରତ ପରିବର୍ତ୍ତେ ପାକିସ୍ଥାନ ଓ ଭାରତ ଦୁଇଟି ସ୍ୱତନ୍ତ୍ର ରାଷ୍ଟ୍ର ରୂପେ ପରିଗଣିତ ହେଲେ । ସ୍ୱାଧୀନତା ପୂର୍ବରୁ ବିଭିନ୍ନ ପ୍ରଦେଶରେ କଂଗ୍ରେସ ଦ୍ୱାରା ପରିଚାଳିତ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ଓ ତା' ସାଙ୍ଗକୁ ବ୍ରିଟିଶ ଶାସନରୁ ପୂର୍ଣ୍ଣ ସ୍ୱାଧୀନତା ପାଇବାକୁ ହେଉଥିବା ଆନ୍ଦୋଳନର ପ୍ରଭାବ ଦେଶୀୟ ରାଜ୍ୟଗୁଡ଼ିକର ଦେଶପ୍ରେମୀ ସାଧାରଣ ଜନତା ଓ ସେମାନଙ୍କ ନେତାମାନଙ୍କ ଉପରେ ପଡ଼ିଥିଲା । ସେମାନେ ମଧ୍ୟ ଅତ୍ୟାଚାରୀ ରାଜ-ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ଏବଂ ପ୍ରଜାମଣ୍ଡଳ ଗଠନ କରି ପ୍ରତିନିଧିମୂଳକ ଶାସନ ଦାବୀ କରୁଥିଲେ ।

ସ୍ୱାଧୀନତା ପୂର୍ବରୁ ସେ ସମ୍ପର୍କରେ ଅନୁଧ୍ୟାନ କରି ଓ ହିନ୍ଦୁ-ମୁସଲମାନ ବିବାଦର ପର୍ଯ୍ୟାଲୋଚନା କରି ପାକିସ୍ଥାନ ରାଷ୍ଟ୍ର ଗଠନର ଦାବୀ ସମ୍ପର୍କରେ ପର୍ଯ୍ୟାଲୋଚନା କରିବାପାଇଁ ୧୯୪୬ରେ ବ୍ରିଟିଶ ପାର୍ଲିମେଣ୍ଟର ପ୍ରତିନିଧି ରୂପେ ଲର୍ଡ୍ ପେଥିକ ଲରେନ୍ସଙ୍କ ନେତୃତ୍ୱରେ କ୍ୟାବିନେଟ୍ ମିସନ ଭାରତ ଆସିଥିଲା । କ୍ୟାବିନେଟ୍ ମିସନ ମୁଖ୍ୟତଃ ସ୍ୱାଧୀନତା ଏବଂ ହିନ୍ଦୁ-ମୁସଲମାନ ପ୍ରଶ୍ନର ବିଚାର ଆଲୋଚନାରେ ଅଧିକ ବ୍ୟସ୍ତ ରହିଥିଲେ । ତଥାପି ପଡ଼ୋଶୀ ପ୍ରଦେଶଗୁଡ଼ିକ ସହ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ପାଇଁ କ୍ୟାବିନେଟ୍ ମିସନକୁ ସ୍ମାରକପତ୍ର ଦିଆ-ଯାଇଥିଲା । ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଏହି ସ୍ମାରକପତ୍ର ପ୍ରଦାନ କରିଥିଲେ । ଏହା ପୂର୍ବରୁ ୧୯୩୮ ମସିହାରେ ସର୍ବଭାରତୀୟ ପ୍ରଜାମଣ୍ଡଳ ପକ୍ଷରୁ ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକରେ ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାର ସମ୍ପର୍କରେ ଅନୁଧ୍ୟାନ କରିବାପାଇଁ ଏକ କମିଟି ଗଠନ କରାଯାଇଥିଲା । ଏହି କମିଟିର ମୁଖ୍ୟ ଥିଲେ ଶ୍ରୀ ମହତାବ । ଏହି କମିଟିରେ ବଳବନ୍ତରାୟ ମେହେଟା ଓ ଲାଲ-ମୋହନ ପଟ୍ଟନାୟକ ସଭ୍ୟ ଥିଲେ । ଏହି କମିଟି ତାଙ୍କ ରିପୋର୍ଟରେ କହିଥିଲେ ଯେ ଦେଶୀୟ ରାଜ୍ୟଗୁଡ଼ିକୁ ଦିଆଯାଇଥିବା ଅର୍ଦ୍ଧ-ସାର୍ବଭୌମ କ୍ଷମତାର ସନନ୍ଦକୁ ରଦ୍ଦ କରାଯିବା ଉଚିତ୍ ଏବଂ ସେମାନଙ୍କୁ ଚିରସ୍ଥାୟୀ ବନ୍ଦୋବସ୍ତର ଆଳି, କନିକା ଓ କୁଜଙ୍ଗ ଭଳି ଇଷ୍ଟେଟ ବା ଜମିଦାରୀ ରୂପେ ଗଣନା କରାଯିବା ଉଚିତ୍ । ତତ୍କାଳୀନ ଭାଇସ୍‌ରାୟ ଲର୍ଡ଼ ଲିଥିଗୋ ନୀତିଗତ ଭାବରେ ଏଥିରେ ସମ୍ମତ ହୋଇଥିଲେ । କିନ୍ତୁ ବିଭେଦ ସୃଷ୍ଟି-କରି ଭାରତକୁ ନିଜ ଅକ୍ତିଆରରେ ରଖିବାକୁ ଚାହୁଁଥିବା ବ୍ରିଟିଶ ଶାସନର

ଜଣେ ପ୍ରଭୁଭକ୍ତ କର୍ମନିଷ୍ଠ ରୂପେ ସେ ଏ ଦିଗରେ ବିଶେଷ ଅଗ୍ରସର ହେବାର ସମ୍ଭାବନା ନଥିଲା । ତା'ଛଡ଼ା ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ପରେ ଏସବୁ ପ୍ରଶ୍ନ ବ୍ରିଟିଶ ଶାସନ ରାଜନୈତିକ ଶୀତଳ ଭଣ୍ଡାରରେ ଗଚ୍ଛିତ ହୋଇ ରହିଲା ।

୧୯୩୮-୩୯ ମସିହାରୁ ଦେଶୀୟ ରାଜ୍ୟଗୁଡ଼ିକର ଭବିଷ୍ୟତ କ'ଣ ହେବା ଉଚିତ୍ ଓ ପ୍ରଦେଶଗୁଡ଼ିକୁ ସ୍ୱାଧୀନତା ଦିଆଗଲେ ଦେଶୀୟ ରାଜ୍ୟ-ଗୁଡ଼ିକ ସ୍ୱତନ୍ତ୍ର ରହିଲେ ତାହା ସ୍ୱାଧୀନ ଭାରତ ପ୍ରତି କି ପ୍ରକାର ସମସ୍ୟା ଓ ବିପଦର କାରଣ ହେବ; ସେ ସମ୍ପର୍କରେ ଡକ୍ଟର ମହତାବ ହୃଦୟଙ୍ଗମ କରିପାରିଥିଲେ । କେବଳ ସେତିକି ନୁହେଁ, ଓଡ଼ିଶାର ଗଡ଼ଜାତ ମାନଙ୍କରେ ଏବଂ ବିଶେଷ କରି ଢେଙ୍କାନାଳ ଓ ତାଳଚେର ରାଜ୍ୟରେ ପ୍ରଜାମାନଙ୍କ ଉପରେ ରାଜାଙ୍କ ପକ୍ଷରୁ ଯେଉଁ ଅତ୍ୟାଚାର କରାଯାଉଥିଲା ଓ ଯେଉଁ ସବୁ ଅବୈଜ୍ଞାନିକ କର ବସାଯାଉଥିଲା—ସେ ସବୁଥିଲା ଶାସନ-ତାନ୍ତ୍ରିକ ବିଧିବିଧାନର ବିରୋଧୀ । ରାଜାଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ତାଳଚେରର ସମସ୍ତ ଅଧିବାସୀ ନିକଟବର୍ତ୍ତୀ ମୋଗଲବନ୍ଦୀ ଅଞ୍ଚଳର ଅନୁଗୁଳକୁ ଚାଲି ଆସିଥିଲେ । ରଣପୁର ରାଜ୍ୟରେ ବ୍ରିଟିଶ ସରକାରଙ୍କ ପଲିଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍‌ଙ୍କୁ ଉତ୍ତ୍ୟକ୍ତ ପ୍ରଜାମାନେ ପିଟି ପିଟି ହତ୍ୟା କରିଥିଲେ । କାରଣ ଗଡ଼ଜାତରେ ହେଉଥିବା ଅତ୍ୟାଚାରର ସେ ଥିଲେ ନୀରବ ସମର୍ଥକ । ଏହି ସବୁ କାରଣରୁ ଗଡ଼ଜାତଗୁଡ଼ିକର ପ୍ରଦେଶ ସହ ମିଶ୍ରଣ ସପକ୍ଷରେ କ୍ୟାବିନେଟ୍ ମିସନ୍‌କୁ ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ମହତାବ ସ୍ମାରକ ପତ୍ର ଦେଇଥିଲେ । କିନ୍ତୁ ବ୍ରିଟିଶ ପାର୍ଲାମେଣ୍ଟରେ ଗୃହୀତ ଭାରତୀୟ ସ୍ୱାଧୀନତା ଆଇନରେ ଏ ବିଷୟରେ କୌଣସି ପଦକ୍ଷେପ ନିଆଯାଇ ନ ଥିଲା । ଅର୍ଥାତ୍ ଭାରତର ସ୍ୱାଧୀନତା ପରେ ଦେଶର ଦେଶୀୟ-ରାଜ୍ୟଗୁଡ଼ିକରେ ଥିବା ବ୍ରିଟିଶ ସରକାରଙ୍କ Paramountcyର ଅବସାନ ଘଟିଥିଲା । ଫଳତଃ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱାଧୀନ ହୋଇ ଯାଇଥିଲେ । କେବଳ ପରରାଷ୍ଟ୍ର, ବୈଦେଶିକ ନୀତି, ମୁଦ୍ରା, ଏବଂ ଯୋଗାଯୋଗ ବା ଡାକ ତାର ବିଭାଗ ଭାରତ ସରକାରଙ୍କ ନିୟନ୍ତ୍ରଣାଧୀନ ରହିବ ବୋଲି ବ୍ୟବସ୍ଥା ଥିଲା । କିନ୍ତୁ ଦେଶୀୟ ରାଜ୍ୟର ଆଭ୍ୟନ୍ତରୀଣ ଶାସନ ବା କୁଶାସନ ଉପରେ ଭାରତ ସରକାରଙ୍କର କୌଣସି ଅଙ୍କୁଶ ନ ଥିଲା । ଫଳରେ ତା'ର ମନପ୍ରାଣ

ଯୋଗୁ ପଡ଼ୋଶୀ ପ୍ରଦେଶରେ ଅସ୍ଥିରତା ସୃଷ୍ଟି ହେବାର ଆଶଙ୍କା ରହିଥିଲା । ଏପରି କ୍ଷେତ୍ରରେ ବିଶୃଙ୍ଖଳ ଦେଶୀୟ ରାଜ୍ୟର ନିରାପତ୍ତା ପାଇଁ ଭାରତର କେନ୍ଦ୍ର ସରକାର ଦାୟୀ ରହିବାର ଯୌକ୍ତିକତା ନ ରହିବା ସ୍ୱାଭାବିକ ।

ସ୍ୱାଧୀନ ଭାରତର ମାନଚିତ୍ରରେ ରହିଥିବା କେତେକ ଦେଶୀୟ ରାଜ୍ୟ ଏକତ୍ର ହୋଇ ସ୍ୱତନ୍ତ୍ର Confedration ଗଠନ କରିବାକୁ ମସୁଧା ଆରମ୍ଭ କରିଦେଇଥିଲେ । ଓଡ଼ିଶାର ଗଡ଼ଜାତ ରାଜାମାନେ ଛତିଶଗଡ଼ ଓ ବସ୍ତର ରାଜ୍ୟ ସହ ମିଶି Estern States Union ଗଢ଼ିବାକୁ ଷଡ଼ଯନ୍ତ୍ର ଆରମ୍ଭ କରି ଦେଇଥିଲେ । ସେମାନେ ହାଇଦ୍ରାବାଦର ନିଜାମ୍‌ଙ୍କ ସହ ଏଥିପାଇଁ ଯୋଗସୂତ୍ର ମଧ୍ୟ ସ୍ଥାପନ କରିଥିଲେ । କେବଳ ସେତିକ ନୁହେଁ, ସମ୍ବଲପୁର ସମେତ ପାଟନା, କଳାହାଣ୍ଡି ପ୍ରଭୃତି ଗଡ଼ଜାତଗୁଡ଼ିକ କେବେ ଓଡ଼ିଶା ଇତିହାସ ସହ ସମ୍ପୃକ୍ତ ନ ଥିଲେ ଏବଂ ସେମାନେ କୋଶଳ ଭୂଖଣ୍ଡର ଅଂଶବିଶେଷ ବୋଲି ପାଟନା ରାଜା ଶ୍ରୀ ଆର୍. ଏନ୍, ସିଂହ ଦେଓ ଦାବୀ କରିଥିଲେ । ସେହି ସମୟରେ ଓଡ଼ିଶାର ସମ୍ବଲପୁର ଜିଲ୍ଲାରେ ହୀରାକୁଦ ବନ୍ଧ ଯୋଜନାରେ ଜଳମଗ୍ନ ହେଉଥିବା ପ୍ରାୟ ୧୦୦ଟି ଗ୍ରାମର ଅଧିବାସୀମାନଙ୍କ ଅସନ୍ତୋଷର ସୁଯୋଗ ନେଇ ସମ୍ବଲପୁରକୁ ଓଡ଼ିଶାରୁ ବିଚ୍ଛିନ୍ନ କରିବାକୁ ମଧ୍ୟ ଷଡ଼ଯନ୍ତ୍ର କରାଯାଇଥିଲା । କିନ୍ତୁ ପ୍ରଧାନ ମନ୍ତ୍ରୀ ଶ୍ରୀ ମହତାବଙ୍କ ବିଚକ୍ଷଣ ନେତୃତ୍ୱ ଫଳରେ ଏହି ଷଡ଼ଯନ୍ତ୍ର ପଣ୍ଡ ହୋଇଥିଲା ।

ବାଲେଶ୍ୱର ନିକଟବର୍ତ୍ତୀ ନୀଳଗିରି ଗଡ଼ଜାତରେ ରାଜାଙ୍କ ପ୍ରରୋଚନାରେ କେତେକ ଅପରାଧୀ ପ୍ରଜାମଣ୍ଡଳ ନେତାମାନଙ୍କ ଘର ପୋଡ଼ି ଦେଇଥିଲେ । ସାଧାରଣ ଅଧିବାସୀ ମଧ୍ୟ ଏହି ଗୃହଦାହ ଓ ଲୁଟ-ତରାଜର ଶିକାର ହେବାରୁ ମୁକ୍ତ ରହିପାରିଲେ ନାହିଁ । ମୋଗଲବନ୍ଦୀ ବାଲେଶ୍ୱର ଓ ଓଡ଼ିଶା ଉପରେ ଏହାର କୁପ୍ରଭାବ ପଡ଼ିଲା । ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ସମର୍ଥନ ନେଇ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ଶ୍ରୀ ମହତାବ ନୀଳଗିରି ରାଜ୍ୟକୁ ଓଡ଼ିଶା ମିଲିଟାରୀ ପୋଲିସ ବାହିନୀ ପଠାଇ ନୀଳଗିରିକୁ ଓଡ଼ିଶା ଶାସନାଧୀନ କରିଥିଲେ । ୧୯୪୭ ନଭେମ୍ବର ୧୪ ତାରିଖରେ ଏହା କରାଯାଇଥିଲା । ଏହି ଘଟଣାରେ ଅନ୍ୟାନ୍ୟ ଗଡ଼ଜାତର ରାଜାମାନେ ଭୟଭୀତ ହୋଇ ପଡ଼ିଥିଲେ ।



ତା ୧୪ । ୧୨ । ୧୯୪୭

କଟକର ରାଜଭବନ (ସଂପ୍ରତି ଶିଶୁଭବନ)ରେ ଓଡ଼ିଶା ଗଡ଼ଜାତ ରାଜାମାନଙ୍କ ସହ ଆଲୋଚନାରତ ସର୍ଦ୍ଦାର ପଟେଲ ଓ ଡକ୍ଟର ମହତାବ

ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ଭାରତର ସ୍ୱାଧୀନତା ପ୍ରସଙ୍ଗ ଏବଂ ତାକୁ କେନ୍ଦ୍ର କରି 'ପାକିସ୍ଥାନ' ରାଷ୍ଟ୍ର ଗଠନ ପାଇଁ ମୁସଲିମଲିଗ ଦଳପକ୍ଷରୁ ସୃଷ୍ଟି ହୋଇଥିବା ରାଜନୈତିକ ବିବାଦ ଓ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ସାଂପ୍ରଦାୟିକ ହିଂସାକାଣ୍ଡ ଯୋଗୁ ଦେଶୀୟ ରାଜ୍ୟର ଭବିଷ୍ୟତ ପ୍ରଶ୍ନକୁ ଖୁବ୍ ଗୁରୁତ୍ୱ ଦେଇ ବିଚାର କରିବାକୁ ନେହେରୁ, ପଟେଲ ପ୍ରମୁଖ ଜାତୀୟ ନେତାମାନଙ୍କ ପାଖରେ ହୁଏତ ସମୟର ଅଭାବ ଥିଲା । ବଡ଼ ବଡ଼ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱତନ୍ତ୍ର ରହି ପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କଲେ ହିଁ ଯଥେଷ୍ଟ ହେବ ବୋଲି ପ୍ରଧାନ ମନ୍ତ୍ରୀ ନେହେରୁ ମତବ୍ୟକ୍ତ କରିଥିଲେ । ତେବେ ଓଡ଼ିଶାର ମାଳଗିରି ହିଁ ଏ ଦିଗରେ ଥିଲା ଏକ ବିପ୍ଳବାତ୍ମକ ପଦକ୍ଷେପର ପ୍ରତୀକ । ଠିକ୍ ଏହି ପନ୍ଥାରେ ହାଇଦ୍ରାବାଦକୁ ପୋଲିସ ବାହିନୀ ପଠାଇ କେନ୍ଦ୍ର ଘରୋଇ ମନ୍ତ୍ରୀ ସର୍ଦ୍ଦାର ପଟେଲ ସ୍ୱାଧୀନ ଭାରତ ପକ୍ଷରୁ ଦଖଲ କରି ନେଇଥିଲେ ।

ମାଳଗିରିକୁ ଓଡ଼ିଶା ସରକାର ଦଖଲ କରିବା ପରେ ପ୍ରଦେଶ ସହ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ପ୍ରଶ୍ନ କେନ୍ଦ୍ର ଘରୋଇ ବିଭାଗ ଦ୍ୱାରା ପର୍ଯ୍ୟାଲୋଚନା କରାଗଲା । ତତ୍କାଳୀନ କେନ୍ଦ୍ର ଘରୋଇ ବିଭାଗ ସେକ୍ରେଟେରୀ ଭି: ପି: 'କ' ଶ୍ରେଣୀର ବଡ଼ ବଡ଼ ଦେଶୀୟ ରାଜ୍ୟଗୁଡ଼ିକୁ ସ୍ୱତନ୍ତ୍ର ଓ ସ୍ୱାଧୀନ ରଖିବାକୁ ମତ ଦେଇଥିଲେ । ଏହି ପ୍ରସ୍ତାବକୁ ଦିଲ୍ଲୀରେ ଆଲୋଚନା ବେଳେ ଶ୍ରୀ ମହତାବ ବିରୋଧ କରିଥିଲେ । ତା'ପରେ ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକ ସମ୍ପର୍କରେ ଆଲୋଚନା କରି ମିଶ୍ରଣ କାର୍ଯ୍ୟକାରୀ କରାଇବାକୁ ଓଡ଼ିଶା ଆସିବା ପାଇଁ ସେ ସର୍ଦ୍ଦାର ପଟେଲଙ୍କୁ ନିମନ୍ତ୍ରଣ କଲେ । ତଦନୁଯାୟୀ ସର୍ଦ୍ଦାର ପଟେଲ ୧୯୪୭ ଡିସେମ୍ବର ୧୩ ତାରିଖରେ ଓଡ଼ିଶାରେ ପହଞ୍ଚିଲେ ଏବଂ ସେହିଦିନ ଭୁବନେଶ୍ୱର ବିମାନଘାଟିରୁ ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକରେ ପଦାର୍ପଣ କଲେ । ଡକ୍ଟର ମହତାବଙ୍କ ବ୍ୟବସ୍ଥା କ୍ରମେ ଭୁବନେଶ୍ୱରରୁ କଟକ ଆସିଲା ବେଳେ ବାଟଯାକ ଲୋକେ ହଜାର ହଜାର ସଂଖ୍ୟାରେ ସମ୍ବର୍ଦ୍ଧନା ଜଣାଇ ଗଡ଼ଜାତ ମିଶ୍ରଣ ପାଇଁ ଦାବୀ କରିଥିଲେ ।

ସର୍ଦ୍ଦାର ପଟେଲଙ୍କର କଟକରେ ଅବସ୍ଥାନ କାଳରେ ରାଜାମାନଙ୍କୁ ବ୍ରିଟିଶ ସରକାର ଦେଇଥିବା ସନନ୍ଦର ନକଲ ସବୁକୁ ଶ୍ରୀ ମହତାବ ତାଙ୍କୁ ଦେଖାଇ ତା'ର ଆଇନଗତ ସ୍ଥିତି କିଛି ନାହିଁ ବୋଲି ବୁଝାଇ ଦେଇ ପାରିଥିଲେ । ତାହା ହିଁ ନିଷ୍ପତ୍ତି ନେବାରେ ତାଙ୍କୁ ସାହାଯ୍ୟ କରିଥିଲା ।

ମିଶ୍ରଣ ପାଇଁ ରାଜାମାନେ ଅସମ୍ମତ ହେଲେ ଦେଶୀୟ ରାଜ୍ୟଗୁଡ଼ିକରେ ଆଇନଶୃଙ୍ଖଳା ପରିସ୍ଥିତି ବିପର୍ଯ୍ୟସ୍ତ ହୋଇପଡ଼ିବ ଓ ଏଥିରେ ଓଡ଼ିଶା ସରକାର ନୀରବଦ୍ରଷ୍ଟା ହୋଇ ରହିପାରିବେ ନାହିଁ ଏବଂ ସର୍ଦ୍ଦାର ପଟେଲ ବିଫଳ ହୋଇ ଦିଲ୍ଲୀ ଫେରିଯିବା ଦିନ ହିଁ ଓଡ଼ିଶା ପୋଲିସ ଦେଶୀୟ ରାଜ୍ୟଗୁଡ଼ିକୁ ଦଖଲ କରିନେବେ ବୋଲି ଶ୍ରୀ ମହତାବ କେନ୍ଦ୍ର ମନ୍ତ୍ରୀଙ୍କୁ ସ୍ପଷ୍ଟ କହି ଦେଇଥିଲେ ।

ପରଦିନ ରାଜାମାନଙ୍କ ସହ ଏକ ସମ୍ମିଳନୀରେ କଟକର ରାଜଭବନରେ ସର୍ଦ୍ଦାର ପଟେଲ ମିଳିତ ହୋଇଥିଲେ । ଶ୍ରୀ ମହତାବ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । କାରଣ ସେ ଥିଲେ ଏହି ନାଟକର ମୂଳ ସୂତ୍ରଧର । ଏହି ସମ୍ମିଳନୀରେ ଷଡ଼େଇକଳାର ରାଜା ଟାଇମ୍ ନେଇ ମତ ଧରି ପୂର୍ବର ଦିଲ୍ଲୀ ଆଲୋଚନା କଥା ଉଠାଇଥିଲେ । କିନ୍ତୁ ଏପରି ନିଷ୍ପତ୍ତି ଦିଲ୍ଲୀରେ ହୋଇଥିବା କଥା ସର୍ଦ୍ଦାର ପଟେଲ ଓ ଶ୍ରୀ ମହତାବ ରୋକ୍ ଠୋକ୍ ଅସ୍ୱୀକାର କଲେ । କେବଳ ମୟୂରଭଞ୍ଜର ମହାରାଜା ତାଙ୍କ ରାଜ୍ୟରେ ପ୍ରତିନିଧିମୂଳକ ଶାସନ ପ୍ରବର୍ତ୍ତନ କରିଥିବାରୁ ନିଜର ମନ୍ତ୍ରିମଣ୍ଡଳକୁ ନ ପଚାରି ମିଶ୍ରଣ ସମ୍ପର୍କରେ କୌଣସି ନିଷ୍ପତ୍ତି ନେଇ ପାରିବେ ନାହିଁ ବୋଲି କହିଥିଲେ । ମଧ୍ୟାହ୍ନ ବିରତି ପରେ ଅଧିକାଂଶ ରାଜା ମିଶ୍ରଣ ସପକ୍ଷରେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ଦଲିଲରେ ସ୍ୱାକ୍ଷର କରିଥିଲେ । କେବଳ କଳାହାଣ୍ଡି ମହାରାଜା ସେଦିନ ଏଥିରେ ସ୍ୱାକ୍ଷର ନ କରି ଟାଇମ୍ ନେଇ ମତ ଗ୍ରହଣ କରିଥିଲେ । କିନ୍ତୁ ପରଦିନ ସକାଳେ ସେ ଦଲିଲରେ ସ୍ୱାକ୍ଷର କରିଥିଲେ । ଏଥିପାଇଁ ସର୍ଦ୍ଦାର ପଟେଲଙ୍କ ଭୁବନେଶ୍ୱର ଗାମୀ ଟ୍ରେନ୍ ଘଣ୍ଟାଏ ବିଳମ୍ବରେ କଟକ ଛାଡ଼ିଥିଲା । ଟ୍ରେନ୍‌ର ହୁଇସିଲରେ ଗଡ଼ଜାତ ଶାସନର ଅବସାନ ଘୋଷଣା କରି ପଟେଲଙ୍କ ଟ୍ରେନ୍ କଟକ ଛାଡ଼ିଥିଲା । ଏହାପରି ଭାବରେ ଓଡ଼ିଶା ସହ ୨୫ଟି ଗଡ଼ଜାତର ମିଶ୍ରଣ ହୋଇଥିଲା । ପରେ ମୟୂରଭଞ୍ଜ ମହାରାଜା



ମିଶରରେ ଡକ୍‌ଟର ମହତାବ



ଭୁବନେଶ୍ୱରଠାରେ ରାଜ୍ୟ ସଂଗ୍ରହାଳୟର ଭିତ୍ତିପ୍ରସ୍ତର ସ୍ଥାପନ ଉତ୍ସବରେ ରାଷ୍ଟ୍ରପତି
ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସହ ଡକ୍ଟର ମହତାବ ( [illegible] ୧୯୫୭ )

ନିଜ ରାଜ୍ୟରେ ତାଙ୍କ ପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥାରେ ଅତିଷ୍ଠହୋଇ ସର୍ଦ୍ଦାର ପଟେଲଙ୍କୁ ଦିଲ୍ଲୀରେ ଭେଟି ମିଶ୍ରଣ ପାଇଁ ସମ୍ମତି ପ୍ରକାଶ କରିଥିଲେ ଏବଂ ୧୯୪୯ ଜାନୁୟାରୀ ପହିଲାରେ ଓଡ଼ିଶା ପ୍ରଦେଶ ସହ ମୟୂରଭଞ୍ଜର ମିଶ୍ରଣ ସମ୍ଭବ ହୋଇଥିଲା ।

ଓଡ଼ିଶା ସହ ୨୬ଟି ଗଡ଼ଜାତର ମିଶ୍ରଣ ଫଳରେ ଓଡ଼ିଶାର ଅର୍ଥନୀତିକ ବିକାଶ ସମ୍ଭବ ହେଲା ଓ ବୃହତ୍ତର ଓଡ଼ିଶା ଗଠନ ସମ୍ଭବ ହେଲା, ଓଡ଼ିଶାରୁ ପ୍ରଥମେ ଆରମ୍ଭ ହୋଇଥିବା ଗଡ଼ଜାତ ମିଶ୍ରଣର ମନ୍ତ୍ର ଭାରତର ଅନ୍ୟ ଅଞ୍ଚଳରେ ମଧ୍ୟ ସଫଳତା ସହକାରେ ପ୍ରୟୋଗ ହୋଇଥିଲା । ଏହି ପ୍ରକ୍ରିୟାର ମୂଳ ଉତ୍ସ ଓ ପ୍ରଧାନ ସୂତ୍ରଧର ଯେ ଡକ୍ଟର ମହତାବ ତାହା ଇତିହାସରେ ଚିରଦିନ ପାଇଁ ଲିଖିତ ହୋଇ ରହିଗଲା । ଏ କଥା ନିଜେ ସର୍ଦ୍ଦାର ପଟେଲ ସ୍ୱୀକାର କରିଛନ୍ତି ଏବଂ ବିଶିଷ୍ଟ ସାମ୍ବାଦିକ ଶ୍ରୀ ଦୁର୍ଗା ଦାସ ତାଙ୍କର **From Curzon to Nehru And After** ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ତେଣୁ ଆଧୁନିକ ବୃହତ୍ତର ଓଡ଼ିଶାର ନିର୍ମାତା ରୂପେ ଡକ୍ଟର ମହତାବ ଆଜି ଓଡ଼ିଆ ଜାତିର ବରେଣ୍ୟ । ବୃହତ୍ତର ଓଡ଼ିଶା ପାଇଁ ସେ ୧୯୩୮ରେ ଦେଖିଥିବା ସ୍ୱପ୍ନକୁ ୧୯୪୭ରେ ନିଜେ ସ୍ୱୀକାର କରି ରୂପ ଦେଇଥିଲେ ଏବଂ ଏଥିପାଇଁ ତାଙ୍କୁ ବହୁ କୂଟକପଟ ଆଚରଣ କରିବାକୁ ପଡ଼ିଥିଲା । ବିଚକ୍ଷଣ ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନ ମତି ବିଚାରଧାରା ନେଇ ଏଥିପାଇଁ ତାଙ୍କୁ ଅକ୍ଲାନ୍ତ ପରିଶ୍ରମ କରିବାକୁ ହୋଇଥିଲା । ଓଡ଼ିଶା ଇତିହାସର ଲେଖକ ତଥା ଐତିହାସିକ କଟକର ଲେଖକ, ତାଙ୍କ ଜୀବଦ୍ଦଶାରେ ଓଡ଼ିଶାର ସ୍ୱର୍ଣ୍ଣାଭ ଭବିଷ୍ୟତ ରଚନା କରି ନିଜେ ମଧ୍ୟ ନିଜ ପାଇଁ ନୂତନ ଇତିହାସକୁ କାର୍ଯ୍ୟତଃ ଲିପିବଦ୍ଧ କରି ପାରିଛନ୍ତି । ତେଣୁ କେବଳ ନୂତନ ଓଡ଼ିଶାର ନିର୍ମାତା ନ କହି ତାଙ୍କୁ ଇତିହାସ-ପୁରୁଷ ରୂପେ ଆଖ୍ୟାତ କରାଯାଇ ପାରେ ।

●

# ଶତ ଶରଦର ବାଂଛିତ ଜୀବନ

**ଶ୍ରୀ ରାଜକିଶୋର ରାୟ**

ଉଦୟ ଥିଲେ, ଅସ୍ତ ଅଛି । ମନ ବୁଝେନା, ଜଣ ଜଣଙ୍କର ଜୀବନ ପ୍ରଦୀପ ସିମିତ୍ତ ଜଳି ରହୁ ବୋଲି ଅନ୍ତଃପୁରୁଷ କାମନା କରେ । ସୂର୍ଯ୍ୟର ଏତେ ଦୀପ୍ତି, ଏତେ ବିଚିତ୍ର ରଙ୍ଗର କମନୀୟତା, କେତେ ଭୂମି, କେତେ ସାଗର, କେତେ ଶୈଳ ସ୍ପର୍ଶ କରୁଥିବା ସବିତାର ଏତେ ତେଜ ସତରେ କଅଣ ଅସ୍ତ ହୋଇଯିବ ?

ଏ ଭାବନା ଆସିବା ମାତ୍ରେ ମନ ଉଦାସ ହୋଇଯାଏ । କେତେ କୀର୍ତ୍ତିର କୀର୍ତ୍ତିମାନ, କେତେ ଯଶର ଯଶସ୍ୱୀ, କେତେ ନିର୍ମାଣର ନିର୍ମାତା, କେତେ ଭାବନାର ଭାବୁକ; କେତେ ସ୍ୱର୍ଣ୍ଣପିଣ୍ଡର ସ୍ୱର୍ଣ୍ଣକାର କେତେ ସ୍ୱପ୍ନର ରୂପକାର, କେତେ ସଂଗ୍ରାମର ଆହତ ସଂଗ୍ରାମୀ, କେତେ ପ୍ଲାବନରେ କର୍ଣ୍ଣଧାର, ଏସବୁ ତ ମହାକାଳ ବକ୍ଷ ଉପରେ ଚିହ୍ନିତ ରହିଛି । ତାକୁ କେହି ପୋଛି ଦେଇ ପାରିବେ ନାହିଁ, ସେ ଅନିର୍ବାର, ଅମ୍ଳାନ ।

ଜୟନ୍ତୀରେ ଜୀବନ୍ତଙ୍କୁ ପ୍ରଣାମ ମିଳେ, ମାଲ୍ୟ ମିଳେ, କପାଳରେ ଚନ୍ଦନ ଲାଗେ, ହାତରେ ହାତ ମିଶେ, ଆଖିର ତାରାରେ ଅଶ୍ରୁ ଆସେ । ସତେ କଅଣ ଏ ଜୀବନ; ଜୀବନରୁ ଯାଇ ମହାଜୀବନରେ ମିଶିଲାଣି । ଏକରୁ ଯାଇ ବହୁରେ; ତିଳରୁ ଯାଇ ତାଳ, ବିମ୍ବରୁ ଯାଇ ବିମ୍ବାତୀତ, ସରିତରୁ ଯାଇ ସାଗର, ଭୂମିରୁ ଯାଇ ଆକାଶ, ଅଧଃରୁ ଯାଇ ଊର୍ଦ୍ଧ୍ୱ, ଇନ୍ଦ୍ରିୟରୁ ଯାଇ ଅତୀନ୍ଦ୍ରିୟ, ବାଣୀ ଯାଇ ଆର୍ଷରେ ପହଞ୍ଚିଲାଣି, ତା'ପରେ ···ତା'ପରେ କଅଣ ? କି ପରିଧିରେ ତାଙ୍କୁ ଥୋଇବା ? ପରିଧି ଅଛି କି ? ସୀମା ଅଛି କି ?

ଦେବତାର ସଂଜ୍ଞା କଅଣ ? ବିଦ୍ୱାନ୍‌ର ସଂଜ୍ଞା କଅଣ ? ପ୍ରାଜ୍ଞଙ୍କ ସଂଜ୍ଞା କଅଣ ? ସଂଜ୍ଞାର ବାହାରେ ଆଉ କିଛି ଅଛି କି ? ଯଦି ଥାଏ, ତା'ର ଅନୁଶୀଳନ ତ ସେହି, ସେହି ଏକ ଦେହ, କେତେକ ଅବୟବ, ସେହି ରକ୍ତ ବାହକ ଧମନୀ, ନାଡ଼ୀ, ସେଇ ସବୁ ଆଧାରିତ ମଣିଷଟିଏ ।

କିନ୍ତୁ ଶକ୍ତି ? ଚେତନା ? ସେମାନେ କେଉଁଠି କିପରି ଏ ଲୋକକୁ ଲୋକାତୀତ କଲେ ଯୁଆଡ଼େ ଚାହିଁଲେ ତା'ର ମନର ସ୍ପର୍ଶ, ସଂବିତ୍‌ର ସ୍ପର୍ଶ, ଶକ୍ତିର ହରିହାଟ, ନିର୍ଭୀକତାର ହିମାଳୟ ଲଙ୍ଘନ, କ୍ଷୁଧାର ଶରରୁ ବି ଅମୃତ ସଂଗ୍ରହ, ଆକ୍ରୋଶରୁ ବହୁ କ୍ରୋଶ ଦୂର, ମିତ୍ର ଶତ୍ରୁ ହେଲେ ବି ସେହି ଉଦାର ହସ, ଶତ୍ରୁ ମିତ୍ର ହେଲେ ବି ସେହି ଆଲିଙ୍ଗିତ ଭାବ, କାଳ ଅକାଳ ହେଲେ ଯାହା, ଅକାଳ କାଳ ହେଲେ ବି ସେଇ ସ୍ଥିତପ୍ରଜ୍ଞ, ମାଟିରୁ ରାଜମାଟି, କେଉଁଠି ପଙ୍କିଳ ହେଲେ ବି ପଦ୍ମ ଫୁଟିଛି, ପଙ୍କ ସିମିତି ଭୂଷଣ, ଚନ୍ଦନ ସିମିତି ଆଭୂଷଣ ଏତ ବଡ଼ ଆଶ୍ଚର୍ଯ୍ୟ ! ମଣିଷ ଦେହରେ ଏତେ ଆଶ୍ଚର୍ଯ୍ୟର ଲୀଳା କିମିତି ସମ୍ଭବ ହେଲା ?

ସମ୍ଭବ ଅସମ୍ଭବର ବାଡ଼ ବଡ଼ ସୂକ୍ଷ୍ମ । ମଣିଷ ଆତ୍ମାରେ ଯଦି ଅତୀନ୍ଦ୍ରୀୟ ଶକ୍ତି ରହିଛି, ତେବେ ତାକୁ ଖେଳାଇବା ନ ମଣିଷ ପଣିଆ, ଦେବତ୍ୱର ନିମନ୍ତ୍ରଣ ।

ପରମ ପୁରୁଷ କ୍ଷେତ୍ରଜ୍ଞ । ଏ କଥା ଗୀତା କହେ । ମାନବ-ଜୀବନ କ୍ଷେତ୍ରରେ କିଏ କ୍ଷେତ୍ରଜ୍ଞ ? ସେହି ମାନବ ନୁହେଁ କି ? କ୍ଷେତ୍ର ତ ବହୁଳ, ଖେଳ ଜାଣିଲେ, ଖେଳାଇ ଜାଣିଲେ ଏ କ୍ଷେତ୍ର ଉପରେ ମଣିଷ ହିଁ କ୍ଷେତ୍ରଜ୍ଞ ହୋଇଯାଏ । ଅନ୍ତରାଳରେ ଭଗବାନ ହସୁଥାନ୍ତି । ଦୁହିଁଙ୍କ ଭିତରେ ଗୋଟାଏ ସୂକ୍ଷ୍ମ ଦଉଡ଼ି ବନ୍ଧା ହୋଇଛି । ପ୍ରେମର, ଭକ୍ତିର ସେ ରଜ୍ଜୁ । ଆସିଛି ସଂସାରକୁ; ସଂସାର କର୍ମ ତ କରିବ, ତା' ବ୍ୟତୀତ ଆଉ କଅଣ କିଛି ନାହିଁ ? କିଛି ଊର୍ଦ୍ଧ୍ୱ ଚେତନା ? ଅନ୍ତରୀକ୍ଷରେ ଉଡ଼ିବାର କଳ୍ପନା ?

ରାଜନୀତିରେ ସେହି ଶୀର୍ଷ, ସାହିତ୍ୟରେ ସେହି ଶୀର୍ଷ, ସମ୍ବାଦ ଜୀବିକାରେ ସେହି ଶୀର୍ଷ, ଇତିହାସ ଖେଳେଇବାରେ ସେହି ଶୀର୍ଷ, ଦୁର୍ଗମ କଣ୍ଟାବାଡ଼ ଡେଇଁ ଅଣ୍ଟା ସଳଖିବାର ସେଇ ସଂଗ୍ରାମରେ ଶୀର୍ଷ, ଏତେ

ଶୀର୍ଷ କଅଣ ଗୋଟାଏ ଲୋକର ଭାଗ୍ୟରେ ଥିଲା ? ଏ କଅଣ ପୂର୍ବଜ ସଂସ୍କାର ? ଏ କଅଣ ଆଗରୁ ବନ୍ଧା ଫଟୋଫ୍ରେମ୍ ?

ନା, ଅନ୍ତରାତ୍ମା ବୁଝୁନି । ହୁଏତ ସଂସ୍କାରର ଟିକିଏ ପାହୁଲ ବୋହି ଆସିଛି, କିନ୍ତୁ ସେ ପାହୁଲକୁ ବିଶାଳ ସ୍ରୋତରେ ସ୍ରୋତସ୍ୱିନୀ କରିବାରେ କଅଣ ଆତ୍ମବିଶ୍ୱାସ ନାହିଁ ? ଏଇ ଆତ୍ମବିଶ୍ୱାସରୁ ଜାଗିଥିବା ଯେତେକ ଗିରିଗୋବର୍ଦ୍ଧନ ଟେକି ଆଣି ଏକା ସାଙ୍ଗରେ ବିଶଲ୍ୟକରଣୀ ଖୋଜିବାରେ ଏ ଲୋକଟି କଅଣ ଜୀବନ-ଜୟନ୍ତୀରେ ସମ୍ମାନାସ୍ପଦ ନୁହଁ ? ଓଡ଼ିଶାରେ ଜନ୍ମ ନେଇଛି ବୋଲି କଅଣ କେବଳ ଓଡ଼ିଆ ହୋଇ ରହିଥିବ, ହଁ, ଓଡ଼ିଆଟାଏ ତ ? ଏଇ ତାଚ୍ଛଲ୍ୟ ? ଓଡ଼ିଆ ଓ ଉତ୍କଳ ସାଙ୍ଗରେ ଯେଉଁ ମାନସିକତା ସାଧାରଣରେ ଚର୍ଚ୍ଚା । ହୁଏ, ସେ କଅଣ ସେଇଆ ? ଓଡ଼ିଆ-ଦର୍ପଣରେ ସେ ମୁହଁଟି କଅଣ ବିଶ୍ୱ-ଦର୍ପଣରେ ବିମ୍ବିତ ହେଉନାହିଁ ?

ଟିକିଏ ମନ ନ ମିଳିଲେ, ଏବେ ଲୋକେ ମାରି ଦେଉଛନ୍ତି, ଭାବନ୍ତି, ରକ୍ତ ଢାଳି ଦେଲେ ସବୁ ସରିଗଲା । ରକ୍ତବୀଜ ଯେ ଜନ୍ମିବେ ଏକଥା ସେମାନେ ଜାଣନ୍ତି ନାହିଁ । ମଣିଷକୁ ମାରିଦେବା ସହଜ, ମାତ୍ର ସେତିକି ସହଜ ରକ୍ତମଖା ଦେହରୁ ଅମରତ୍ୱର ଛାପ ଲିଭେ ନାହିଁ । ପ୍ରିୟଦର୍ଶିଙ୍କ ନିଧନରେ ମଣିଷର ଚିନ୍ତନ ଆଟିର ଶଗଡ଼ ଗୁଳାରେ ଆଉ ଯାଉ ନାହିଁ । ଏକା ପଦ୍ଧତିରେ ବିପ୍ଳବର ଶେଷ ହୋଇଗଲା । ଅନ୍ୟ ଏକ ଦର୍ଶନ ଜନ୍ମ ନେଇଛି । ଏଇ ପରିପ୍ରେକ୍ଷୀରେ ଆଜିର ଏ ଜୟନ୍ତୀର କଅଣ ମୂଲ୍ୟ ନାହିଁ ? ହିଂସାରେ ଉନ୍ମତ୍ତ ପୃଥିବୀରେ ଅଧିବାସ ମାନବାତ୍ମାକୁ ଉପ୍ଛାର୍ତ୍ତି କରୁନାହିଁ ?

ତଥାପି ଚରୈବେତି, ଚରୈବେତି, ଏକଲା ଚଲୋ । ସାଥୀର ପ୍ରୟୋଜନ ନାହିଁ । ଯେଉଁ ସାଥୀ, ଯେଉଁ ସାରଥୀ ରହିଛି, ସେ ଅଦୃଶ୍ୟ ଅଥଚ ତା'ର କରୁଣାସିକ୍ତ ଲୋଚନ ତଳେ ଓଡ଼ିଶା ବଞ୍ଚିବ ଓ ଓଡ଼ିଶାର ସବୁ ସଂଭ୍ରମର ଅଧିକାରୀ, ନିୟାମକ, କର୍ଣ୍ଣଧାର ଡକ୍ଟର ହରେକୃଷ୍ଣ ମହତାବଙ୍କର ଶତ ଶରଦର ବାଂଚ୍ଛିତ ଜୀବନର ସୂର୍ଯ୍ୟାସ୍ତ ହେବନାହିଁ । ଶକ୍ତିର ଅସ୍ତକାଳ ନ ଥାଏ । ପ୍ରଜ୍ଞାର ଅସ୍ତକାଳ ନ ଥାଏ । ଭୂତରେ ମିଶେ ଭୌତିକ ଶରୀର । ସେ ତ ମିଶିବ, ରହିଯାଏ, ରହିଥିବ, ଇତିହାସର ପୃଷ୍ଠାରେ ନୁହେଁ, ମହାକାଳର କାଳ-ନେଣ ତଳେ,

ସେଠାରେ ବିରାଟର କେବଳ ନିମନ୍ତ୍ରଣ, ଖର୍ବତା, କ୍ଷୁଦ୍ରତା ସେଠାରେ ହଜିଯାଏ ।

ଉତ୍କଳର ମହତାବ ସେହି ବିରାଟର ବିରାଟତ୍ୱ, ସେହି ବୁଦ୍ଧଙ୍କ ଶରଣଂ, ସେହି ଧର୍ମର ଶରଣଂ, ସେହି ବିଶ୍ୱସଂଘର ଅନ୍ତେବାସୀ, ଯିଏ ନିତ୍ୟସ୍ୱାଦରେ ସ୍ୱାଦିଷ୍ଟ, ବରଣୀୟରେ ବରିଷ୍ଠ ।

